# ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର

ଡକ୍ଟର ନାରାୟଣ ସାହୁ



ସତ୍ୟନାରାୟଣ ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୨

ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର
ଡକ୍ଟର ନାରାୟଣ ସାହୁ

ପ୍ରକାଶକ : ସତ୍ୟନାରାୟଣ ବୁକ୍ ଷ୍ଟୋର୍
ବିନୋଦ ବିହାରୀ, କଟକ -୨

ପରିମାର୍ଜିତ ଚତୁର୍ଥ ସଂସ୍କରଣ : ୨୦୧୬

ଡିଟିପି : ବାବାଗତିଶ୍ୱର ଡିଟିପି ସେଣ୍ଟର

ପ୍ରଚ୍ଛଦ : ଆଶିଷ ଗଡ଼ନାୟକ

ମୁଦ୍ରଣ : ଦେବୀ ଗ୍ରାଫିକ୍ସ
ଚାନ୍ଦିନୀଚୌକ, କଟକ-୨

ମୂଲ୍ୟ : ୬୦ ଟଙ୍କା ମାତ୍ର

ASRA KHOJIBULTHIBA ISWAR

by Dr. NARAYAN SAHU

Publisher : SATYANARAYAN BOOK STORE

Revised Edition : 2016

DTP : BabaGatiswar DTP Center
Cover : Ashis Gadnayak
Printed by : Devi Graphics
Price : Rs. 60/- only

# ଅଗ୍ରଲେଖ

ଆଶ୍ରାଖୋଜି ବୁଲୁଥିବା ଈଶ୍ୱର ୧୯୯୧ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇବା ପରେ ଏହି ପୁସ୍ତକର ଚତୁର୍ଥ ତଥା ପରିମାର୍ଜିତ ସଂସ୍କରଣ ପ୍ରକାଶ ପାଇବା ନିଶ୍ଚିତ ଭାବେ ଆନନ୍ଦର କଥା । ଏହି ନାଟକର ସର୍ବକାଳୀନ ମୂଲ୍ୟବୋଧ ରହିଛି । ଧର୍ମକୁ ନେଇ ଲାଗି ରହିଥିବା ଭେଳିକି ଓ ଏହାର କାର୍‌ପଟ୍‌ଦାର୍‌ଗଣଙ୍କ କାର୍ଯ୍ୟକଳାପକୁ ତୀକ୍ଷ୍ଣ ଭାବେ ବ୍ୟଙ୍ଗ କରାଯାଇଛି । କୌଣସି ନିର୍ଦ୍ଦିଷ୍ଟ ଧର୍ମର ବାହକ ନୁହେଁ ଏହି ନାଟକ । ଈଶ୍ୱର ସବୁଧର୍ମରେ ଅଛନ୍ତି ଆଉ ରହିବେ ମଧ୍ୟ । ତେବେ ତାଙ୍କୁ ନେଇ କେତେକ ସୁବିଧାବାଦୀ ଗୋଷ୍ଠୀ ନିଜ ନିଜର ଫାଇଦା ପାଇଁ ଏକ ପ୍ରକାର ବେପାର ଚଳାଇଛନ୍ତି । ଏହି ସମ୍ପ୍ରଦାୟମାନଙ୍କର ମୁଖା ଖୋଲିଦେବା ହେଉଛି ନାଟକର ମୂଳ ଲକ୍ଷ୍ୟ । ଏ ସଂପର୍କରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ମୁଖ୍ୟ ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ ଏକ ଦୀର୍ଘ ମୁଖବନ୍ଧ ଲେଖିଛନ୍ତି, ଯାହା ଛାତ୍ରଛାତ୍ରୀ ତଥା ନାଟ୍ୟପ୍ରେମୀମାନଙ୍କ କାମରେ ଆସିବ ।

ଏଇ ଅବସରରେ ମୁଁ ପ୍ରଫେସର ପ୍ରଧାନ ଓ ଏ ଉଦ୍ୟମର ପ୍ରଧାନ କାଣ୍ଡାରୀ ପ୍ରଫେସର ପ୍ରସନ୍ନ କୁମାର ସ୍ୱାଇଁଙ୍କୁ ଅନ୍ତରର କୃତଜ୍ଞତା ଜଣାଉଛି । ବନ୍ଧୁ ପ୍ରଫେସର ଦେବୀ ପ୍ରସନ୍ନ ପଟ୍ଟନାୟକ ସହୃଦୟତାର ହାତ ବଢାଇଥିବାରୁ ତାଙ୍କୁ ସାଧୁବାଦ ଜଣାଉଛି । ଛାତ୍ର ଗବେଷକ ଅଧ୍ୟାପକ ସର୍ବେଶ୍ୱର ବେହେରା ଏହି ଉଦ୍ୟମକୁ ସଫଳ କରିଥିବାରୁ ତାଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

# ମୁଖବନ୍ଧ

## ଆଶ୍ରା ଖୋଜି ବୁଲୁଥିବା ଈଶ୍ୱରଙ୍କ ସଂପର୍କରେ...

'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ବିଶିଷ୍ଟ ନାଟ୍ୟକାର ଡକ୍ଟର ନାରାୟଣ ସାହୁଙ୍କ ଏକ ବିଶେଷ ଚର୍ଚ୍ଚିତ ନାଟକ । ୧୯୮୯ ମସିହାରେ ରଚିତ ଏହି ନାଟକଟି ୧୯୯୧ ମସିହା ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ହୋଇଥିଲା । ନାଟକ ଏକ ମିଶ୍ର କଳା ଏବଂ ଏହା ଉଭୟ ଦୃଶ୍ୟ ଓ ଶ୍ରାବ୍ୟ ହୋଇଥିବାରୁ ସାହିତ୍ୟରେ ଏହାର ଏକ ଭିନ୍ନ ପରିଚୟ ରହିଛି । ସାହିତ୍ୟର ଅନ୍ୟାନ୍ୟ ବିଭାଗର କେବଳ ପାଠକ ବା ଶ୍ରୋତା ରହିଥିବା ସମୟରେ, ନାଟକର ଥାଏ ଶ୍ରୋତା, ପାଠକ ଓ ଦର୍ଶକ । ନାଟକର ବହୁମୁଖୀନତା ତାର ବୈଶିଷ୍ଟ୍ୟକୁ ପ୍ରମାଣିତ କରିଥାଏ ।

ସ୍ୱାଧୀନତା ପ୍ରାପ୍ତି ପରେ ଭାରତରେ ଗୋଟିଏ ସମ୍ବିଧାନ ପ୍ରଣୟନ କରାଯାଇଥିଲା । ସେଥିରେ ଭାରତକୁ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ରୂପେ ଘୋଷଣା କରାଯାଇଥିଲା । ପ୍ରତ୍ୟେକ ବ୍ୟକ୍ତି ନିଜ ଇଚ୍ଛାନୁଯାୟୀ ଧର୍ମଗ୍ରହଣ କରିପାରିବେ । ଏହାର ଏକମାତ୍ର ଉଦ୍ଦେଶ୍ୟ ଥିଲା ଧର୍ମକ୍ଷେତ୍ରରେ ଉଦାରତା ପ୍ରକାଶ କରିବା ପ୍ରତ୍ୟେକ ଭାରତୀୟଙ୍କ ଉଦ୍ଦେଶ୍ୟ ହେବା ଉଚିତ୍, ମାତ୍ର ସ୍ୱାଧୀନତା ପରେ ଧର୍ମ ଓ ଜାତିକୁ ନେଇ ଅନେକ ଦଙ୍ଗା ହୋଇଛି । ବହୁ ବ୍ୟକ୍ତି ପ୍ରାଣ ହରାଇଛନ୍ତି ।

ଧାର୍ମିକ ଉଦାରତା ବା ସହିଷ୍ଣୁତା ପରିବର୍ତ୍ତେ ଦେଖାଦେଇଛି ଉଗ୍ର ହିଂସ୍ରତା ଓ ପ୍ରତିଶୋଧ ପରାୟଣତା । ମନ୍ଦିର, ମସ୍‌ଜିଦ୍ ଓ ଗୀର୍ଜା ହୋଇଛି ରକ୍ତାକ୍ତ ସଂଘର୍ଷର କ୍ଷେତ୍ର । 'ଈଶ୍ୱର'ଙ୍କୁ ନେଇ କିଛି ଭଣ୍ଡ, ସ୍ୱାର୍ଥ ପରାୟଣ ବ୍ୟକ୍ତି ନିଜର ଫାଇଦା ଉଠାଇବାର ଚେଷ୍ଟା କରିଛନ୍ତି । ଆବଶ୍ୟକସ୍ଥଳେ ଈଶ୍ୱରଙ୍କୁ ବଳି ପକାଇବାକୁ କୁଣ୍ଠା ପ୍ରକାଶ କରିନାହାନ୍ତି । ମନ୍ଦିର, ମସଜିଦ୍ କିମ୍ବା ଗୀର୍ଜା ଆଉ ଈଶ୍ୱରଙ୍କ ଘର ହୋଇ ରହିନାହିଁ । ଏକଦା ଆମ ବିଶ୍ୱାସର ପୃଥିବୀରେ ଯେଉଁ ଈଶ୍ୱର ସମସ୍ତଙ୍କୁ ଘର ଯୋଗାଉଥିଲେ ସେ ନିଜେ ହୋଇଗଲେ ବେଘରୀ । ପଣ୍ଡା, ସେବକମାନେ ନିଜ ସ୍ୱାର୍ଥ ପାଇଁ ସେମାନଙ୍କ ନାମକୁ କେବଳ ବ୍ୟବହାର କଲେ । ଭାରତବର୍ଷରେ ଆଉ ଧାର୍ମିକ ସହିଷ୍ଣୁତା ରହିଲା ନାହିଁ । ପରିତାପର ବିଷୟ ହେଉଛି ଧର୍ମ ସହିତ ରାଜନୀତିକୁ ଯୋଡ଼ି ଦିଆଗଲା । ଜାତି ଓ ଧର୍ମକୁ ନେଇ ରାଜନୀତିର ରଣାଙ୍ଗନକୁ ପଶି ଆସିଲେ କିଛି ଶଠ, ରାଜନୀତିଜ୍ଞ, ଯେଉଁମାନେ ଧର୍ମକୁ ବ୍ୟକ୍ତିଗତ ସଂପତ୍ତିରେ ପରିଣତ କରିବା କ୍ଷେତ୍ରରେ ଆଦୌ ଅବହେଳା କଲେ ନାହିଁ । ପ୍ରତ୍ୟେକ ମଣିଷ ମଧ୍ୟରେ ବିଶ୍ୱାସହୀନତାର ଚେର ଧୀରେ ଧୀରେ ମାଡ଼ି ବସିବାକୁ ଲାଗିଲା । ଈଶ୍ୱରଙ୍କର ସ୍ଥାନ ଆଉ କୌଣସି ଧର୍ମ କ୍ଷେତ୍ରରେ ରହିପାରିଲା ନାହିଁ । ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ଏହି ଧାର୍ମିକ ସଂକୀର୍ଣ୍ଣତାକୁ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ତୀବ୍ର ବ୍ୟଙ୍ଗୋକ୍ତି କରାଯାଇଛି ।

ସ୍ୱାଧୀନୋତ୍ତର ଭାରତରେ ଶିଳ୍ପ ପ୍ରତିଷ୍ଠା ମାଧ୍ୟମରେ ଦେଶକୁ ଆର୍ଥନୀତିକ କ୍ଷେତ୍ରରେ ସ୍ୱାବଲମ୍ବୀଶୀଳ କରିବା ପାଇଁ ଉଦ୍ୟମ ଜାରି ହେଲା । ଅନେକ ବିଦେଶୀ କମ୍ପାନୀ ଭାରତରେ ନିଜର ଶିଳ୍ପ ପ୍ରତିଷ୍ଠା କଲେ । ମାତ୍ର ପାରିବେଶିକ ସ୍ୱଚ୍ଛତା ଓ ଶୁଦ୍ଧତା ପ୍ରତି କିମ୍ବା ଲୋକମାନଙ୍କର ନିରାପତ୍ତା ପ୍ରତି ଯେପରି ଧ୍ୟାନ ପ୍ରଦାନ କରାଯିବାର କଥା, ତାହା ହୋଇପାରିଲା ନାହିଁ । ତେଣୁ ଭାରତରେ ଶିଳ୍ପଜନିତ ବହୁ ଦୁର୍ଘଟଣା ଘଟିଲା । ଭୋପାଳର ଗ୍ୟାସ୍ ଦୁର୍ଘଟଣା ଥିଲା ସେହିପରି ଏକ ଭୟଙ୍କର ଦୁର୍ଘଟଣା । ସରକାରୀ ହିସାବରେ ୪୦,୦୦୦ ବ୍ୟକ୍ତି କ୍ଷତିଗ୍ରସ୍ତ ବା ମୃତ୍ୟୁବରଣ କରିଥିବାର ହିସାବ ଦିଆଯାଇଥିଲେ ହେଁ ଏହି ସଂଖ୍ୟା ବାସ୍ତବରେ ଥିଲା ଏକ ଲକ୍ଷରୁ ଉର୍ଦ୍ଧ୍ୱ । ନାଟ୍ୟକାର ଏପରି ଏକ ସମ୍ବେଦନଶୀଳ ବିଷୟ ପ୍ରତି ଆଖିବୁଜି ଦେଇପାରିନାହାଁନ୍ତି, ବରଂ ଏହି ଦୁର୍ଘଟଣାକୁ ନାଟକର ଏକ ବିଶିଷ୍ଟ ଅଂଶ ଭାବରେ ଗ୍ରହଣ କରିଛନ୍ତି । ସେହି କ୍ଷତିଗ୍ରସ୍ତଙ୍କ ମଧ୍ୟରେ ଅଛନ୍ତି ମେରୀ ଓ ଯୋଶେଫ୍ ।

ସ୍ୱାଧୀନତା ପୂର୍ବରୁ ଓ ପରେ ଭାରତରେ ଅନେକ ସମସ୍ୟା ଦେଖାଦେଇଛି । ଜାତିଗତ ସମସ୍ୟା, ଧର୍ମଗତ ସମସ୍ୟା, ଶିକ୍ଷଗତ ସମସ୍ୟା, ରାଜନୀତିକ ସମସ୍ୟା ଏପରିକି ଚରିତ୍ରଗତ ମଧ୍ୟ । ଜଣେ ସଚେତନ ନାଟ୍ୟକାର ଭାବରେ ନାରାୟଣ ସାହୁ ସେହି ସମସ୍ତ ସମସ୍ୟାକୁ ଉଭୟ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଏହି ନାଟକରେ ଦେଖାଇ ଦେବାକୁ ଚେଷ୍ଟା କରିଛନ୍ତି । ପ୍ରତ୍ୟେକ କଳା ସୃଷ୍ଟିରେ ଏକ ସାମାଜିକ ଦାୟିତ୍ୱ ମଧ୍ୟ ରହିଛି । ସେହି ଦାୟିତ୍ୱ ହେଉଛି ବର୍ତ୍ତମାନର ସମସ୍ୟା ସମ୍ପର୍କରେ ଦର୍ଶକଙ୍କୁ ସଚେତନ କରାଇଦେବା । ଏହି ନାଟକଟି ତା' ନୈତିକ ଧର୍ମରୁ ଆଦୌ ବିଚ୍ୟୁତ ହୋଇନାହିଁ । ଇତିହାସର ଅନେକ ଘଟଣା ସହିତ ବର୍ତ୍ତମାନର ବହୁ ଘଟଣାକୁ ଚମତ୍କାର ଢଙ୍ଗରେ ନାଟ୍ୟକାର ଏଥିରେ ରୂପାୟିତ କରିଛନ୍ତି । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଗୋଟିଏ ସରଳରେଖାରେ ଠିଆ ହୋଇଛନ୍ତି ନିଜର ଜମାନବନ୍ଦୀ ଶୁଣାଇବାକୁ । ନାଟକ କ'ଣ କହିଛି ବା କହିବାକୁ ଚାହୁଁଛି ଜଣେ ପାଠକ ଭାବରେ ଏହାକୁ ପଢି ସାରିବା ପରେ ମୋର ପ୍ରତିକ୍ରିୟାକୁ ଏଠାରେ ରଖୁଛି । ସେହି ପ୍ରତିକ୍ରିୟା ହୋଇପାରେ ଏକ ବ୍ୟକ୍ତିଗତ ମୂଲ୍ୟାୟନ ମଧ୍ୟ ।

# ନବ ନାଟକ ଓ ନାଟ୍ୟକାର ନାରାୟଣ ସାହୁ

ନବନାଟକର ଜନ୍ମସ୍ଥାନ ପାଶ୍ଚାତ୍ୟ ଜଗତ । ସେଠାରେ ପାରିବାରିକ ଜୀବନରେ ସଙ୍ଗତି ନାହିଁ, ନିଃସଙ୍ଗତା ମଧ୍ୟରେ ମଣିଷ ସତତ ଅଣନିଃଶ୍ୱାସୀ । ମୂଲ୍ୟବୋଧର ସଂକଟ, ନୈତିକ ଅବକ୍ଷୟ ତଥା ବ୍ୟକ୍ତିକୈନ୍ଦ୍ରିକ ଚିନ୍ତାଧାରା ମଣିଷ ଜୀବନକୁ କରିଛି ବିପର୍ଯ୍ୟସ୍ତ । ଏହିଭଳି ଏକ ଅସୀମ ହତାଶା ଓ ନୈରାଶ୍ୟବୋଧରୁ ପାଶ୍ଚାତ୍ୟ ଜଗତରେ ନବନାଟକର ଜନ୍ମ । କଳାବିରୋଧୀ ଆନ୍ଦୋଳନ ତଥା ଜୀବନକୁ ଅଦ୍ଭୁତ ଭାବରେ ପ୍ରକାଶ କରିବା ହେଉଛି ଏହି ନାଟକର ମୂଳ ଲକ୍ଷ୍ୟ । ଅତୀତ ନାଟକ ପରି ଏଥିରେ ଏକ ସୁନିର୍ବାଚିତ କାହାଣୀର ଆବଶ୍ୟକତା ନାହିଁ । ନାଟକ ବର୍ଣ୍ଣିତ ଚରିତ୍ରମାନଙ୍କର ଅନ୍ତଃରାଜ୍ୟର କ୍ରିୟାକଳାପ ଏପରି ନାଟକର ମୁଖ୍ୟ ଉପଜୀବ୍ୟ । ଇଉରୋପରେ ନବନାଟ୍ୟ ଆନ୍ଦୋଳନର ଜନକ ହେନେରିକ୍ ଇବସନ୍ ପାରମ୍ପରିକ ଚରିତ୍ର ପ୍ରଧାନ ନାଟକକୁ ପ୍ରତ୍ୟାଖ୍ୟାନ କରି ସମସ୍ୟାମୂଳକ ନାଟକ ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ । ସଂଳାପ, ଚରିତ୍ର, ମଞ୍ଚ, ବିଷୟବସ୍ତୁ, ଗଠନ ରୀତି – ପ୍ରତ୍ୟେକ କ୍ଷେତ୍ରରେ ଏହି ନବନାଟକ ଆଣିଛି ବିପୁଳ ପରିବର୍ତ୍ତନ । ନବନାଟ୍ୟ ଆନ୍ଦୋଳନର ପୃଷ୍ଠଭୂମିରେ ରହିଛି ବାସ୍ତବବାଦ, ସ୍ୱଭାବବାଦ, ଅଭିବ୍ୟକ୍ତିବାଦ, ସଂକେତବାଦ ପରି ଅନେକ ବାଦ ତଥା ଉଦ୍ଭଟ ଓ କାବ୍ୟିକ ନାଟକର ପ୍ରଭାବ । ଯେଉଁମାନେ ବିଶ୍ୱରେ ନବନାଟ୍ୟ ଆନ୍ଦୋଳନକୁ ଏକ ନିର୍ଦ୍ଦିଷ୍ଟ ରୂପରେଖ ପ୍ରଦାନ କରିଥିଲେ, ସେମାନଙ୍କ ମଧ୍ୟରେ ଅଛନ୍ତି ଇବ୍‌ସେନ୍, ଷ୍ଟ୍ରିଣ୍ଡ୍‌ବର୍ଗ, ଜର୍ମାନର ଜୋଲା ହାଉପଟ୍ ମ୍ୟାନ୍, ସିଞ୍ଜେ, ଶ', କାଇଜର୍, ବେଲଜିୟମର

ମ୍ୟାଟେଲିଙ୍କ୍, ଫ୍ରାନସର ଏଡଓ୍ୱାଡ୍, ରୋଗଟର୍ଡ, ରୁଷିଆର ଚେକ୍‌ଭ, ଇଂଲଣ୍ଡର ସାମୁଏଲ ବେକେଟ ଇତ୍ୟାଦି ।

ଏହି ନାଟକର ଚରିତ୍ରଗଣ ଗୋଟିଏ ଆଦର୍ଶ ମଧ୍ୟରେ ସୀମାବଦ୍ଧ ନୁହନ୍ତି । ସତ୍ୟର ଯଥାଯଥ ଉପସ୍ଥାପନ ମାଧ୍ୟମରେ ମଣିଷକୁ ତାର ସାମ୍ପ୍ରତିକ ଅବସ୍ଥା ସମ୍ପର୍କରେ ସଚେତନ କରାଇଦେବା, ଗୋଟିଏ ଗୋଟିଏ ସଂକେତ ମାଧ୍ୟମରେ ବ୍ୟକ୍ତି ଚରିତ୍ରର ବିଭିନ୍ନ ଦିଗକୁ ଉନ୍ମୋଚନ କରିବା ଏପରି ନାଟକର ମୁଖ୍ୟ ସ୍ୱର ରୂପେ ପରିଗଣିତ ହୋଇଥାଏ । ପାଶ୍ଚାତ୍ୟରେ ସଂଘଟିତ ନବନାଟ୍ୟ ଆନ୍ଦୋଳନ ପରବର୍ତ୍ତୀ ସମୟରେ ରୁଷିଆ, ଜାପାନ, ଚୀନ ଆଦି ଦେଶରେ ପରିଲକ୍ଷିତ ହୋଇଥିଲା । ପରେ ପରେ ଭାରତ ଓ ଓଡ଼ିଶାରେ ଏହାର ପ୍ରଭାବ ଦେଖିବାକୁ ମିଳିଲା । ଭାରତୀୟ ସାହିତ୍ୟରେ ପ୍ରଥମେ ମାଲାୟଲାମ୍ ନାଟକରେ ଏହି ନବନାଟ୍ୟର ପଦଧ୍ୱନି ଶୁଣାଯାଇଥିଲା । ଏକ୍ଷେତ୍ରରେ କେ.ଟି. ମହମ୍ମଦଙ୍କ 'ଅପରେସନ୍ ଥିଏଟର' ସର୍ବାଦୌ ସ୍ମରଣୀୟ । ହିନ୍ଦୀ ସାହିତ୍ୟରେ ମୋହନ ରାକେଶ, ବଙ୍ଗଳାରେ ବାଦଲ ସରକାର, କନ୍ନଡ଼ରେ ଗିରୀଶ କନ୍ନଡ଼, ମରାଠୀରେ ସୁରେଶ ଖରେ ଆଦି ଏକ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ଓଡ଼ିଶାରେ ସୃଜନୀ ନାଟ୍ୟ ସଂସ୍ଥା ନବନାଟ୍ୟ ଆନ୍ଦୋଳନ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛି । ମନୋରଞ୍ଜନ ଦାସ ବାସ୍ତବରେ ନବନାଟ୍ୟ ଆନ୍ଦୋଳନକୁ ଓଡ଼ିଶାରେ ଏକ ବିଧିବଦ୍ଧ ଭିତ୍ତିଭୂମି ପ୍ରଦାନ କରିଥିଲେ । ତାଙ୍କ ପରେ ବିଜୟ ମିଶ୍ର, ବିଶ୍ୱଜିତ୍ ଦାସ ରତ୍ନାକର ଚଇନି, ରମେଶ ପ୍ରସାଦ ପାଣିଗ୍ରାହୀ, ପ୍ରସନ୍ନ ମିଶ୍ର, ଜଗନ୍ନାଥ ପ୍ରସାଦ ଦାସ, କାର୍ତ୍ତିକ ଚନ୍ଦ୍ର ରଥ, ଅକ୍ଷୟ ମହାନ୍ତି, ହରିହର ମିଶ୍ର, ଦିଲେଶ୍ୱର ମହାରଣା, ପ୍ରମୋଦ ତ୍ରିପାଠୀ, ସୁବୋଧ ପଟ୍ଟନାୟକ ଇତ୍ୟାଦି ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଛନ୍ତି । ନବନାଟ୍ୟ ଆନ୍ଦୋଳନ ମାନବବାଦୀ ଚିନ୍ତାଧାରାକୁ ସର୍ବାଦୌ ଗୁରୁତ୍ୱ ଦେଇଥାଏ । ଏହି ଆନ୍ଦୋଳନ ଆମ ପାରମ୍ପରିକ ନାଟ୍ୟଧାରାକୁ ବଦଳାଇ ଦେଲା । ବିଭିନ୍ନ ବାଦର ପରୀକ୍ଷା ନିରୀକ୍ଷା ମଧ୍ୟରେ ତା'ର ସୁକୁମାରତ୍ୱ ଉପରେ ଉଠିଲା ପ୍ରଶ୍ନବାଚୀ । ଏହା ସତ୍ତ୍ୱେ ଏହି ଧାରାଟି ଧିମେଇ ପଡ଼ିନଥିଲା, ବରଂ ନୂଆ ଭାବନା ଓ ରୂପ ନେଇ ନିଜର ଏକ ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିବାକୁ ସମର୍ଥ ହୋଇଥିଲା । ଏହି ଧାରାରେ ନାଟ୍ୟକାର ନାରାୟଣ ସାହୁ ଏକ ବଳିଷ୍ଠ ସ୍ୱର ।

ନାଟ୍ୟକାର ନାରାୟଣ ସାହୁ ପ୍ରତିକୂଳ ପରିବେଶରେ ବାଲ୍ୟକାଳରୁ ସଂଘର୍ଷ କରି ଜୀବନକୁ ଚିହ୍ନିବାକୁ ଚେଷ୍ଟା କରିଛନ୍ତି । ସର୍ବୋଦୟ ଅଫିସ୍, ଅକ୍‌ସଫାମ୍ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ଘରୋଇ କଲେଜ, ବେସିକ୍ ସାଇନ୍‌ସ କଲେଜର ଅସ୍ଥାୟୀ ଅଧ୍ୟାପକ,

ଉତ୍କଳ ବିଶ୍ୱବିଦ୍ୟାଳୟର ଦୂରନିରନ୍ତର ଶିକ୍ଷା ପାଠ୍ୟକ୍ରମ ଓ ଶେଷରେ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ କାର୍ଯ୍ୟ କରି ୨୦୧୫ ମସିହାରେ ସେହି ବିଭାଗର ପ୍ରଫେସର ପଦବୀରେ ଥାଇ ଅବସର ଗ୍ରହଣ କରନ୍ତି । ପ୍ରତିକୂଳରେ ଜୀବନଚର୍ଯ୍ୟା ସମୟରେ ସେ ଯେଉଁ ବାସ୍ତବ ଅନୁଭୂତି ଲାଭ କରିଥିଲେ, ତାକୁ ହିଁ ଉପଜୀବ୍ୟ କରି ସେ ରଚନା କରିଛନ୍ତି ରାଶି ରାଶି ନାଟକ, ଏକାଙ୍କିକା, ଶିଶୁନାଟକ ଇତ୍ୟାଦି । ଅଧ୍ୟାପନା ଜୀବନରେ ସମାଲୋଚନା କ୍ଷେତ୍ରରେ ମଧ୍ୟ ଲେଖନୀ ଚାଳନା କରିଛନ୍ତି । ମାତ୍ର ନାରାୟଣ ସାହୁଙ୍କର ପ୍ରକୃତ ପରିଚୟ ରହିଛି ତାଙ୍କ ରଚିତ ନାଟକ କ୍ଷେତ୍ରରେ । ଅର୍ଥାତ୍ ନାରାୟଣ ସାହୁ କହିଲେ କେବଳ ନାଟ୍ୟକାର ନାରାୟଣ ସାହୁ ହିଁ ବୁଝାଇଥାଏ ।

ତେବେ ଓଡ଼ିଆ ସମାଲୋଚନା ସାହିତ୍ୟ କ୍ଷେତ୍ରରେ ସେ ଅପରିଚିତ ନୁହଁନ୍ତି । 'ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟକ', 'ଓଡ଼ିଆ ସାହିତ୍ୟର ସାମାଜିକ ଓ ସାଂସ୍କୃତିକ ଇତିହାସ', 'ପ୍ରାଚୀନ ଭାରତୀୟ ସାହିତ୍ୟ', 'ନାଟକ ତତ୍ତ୍ୱବିଚାର', 'ଭାତ ଓ କାଳୀଚରଣ', 'ନାଟ୍ୟକାର ବିଜୟ ମିଶ୍ର ଓ ଜଣେ ରାଜା ଥିଲେ', 'ବିତର୍କିତ ଅପରାହ୍ନ' ଓ 'ନାଟ୍ୟକାର ମନୋରଞ୍ଜନ', 'ମଞ୍ଚ ଓ ନାଟକର କଳାକୌଶଳ', 'ତଟ ନିରଞ୍ଜନାର ଦୃଷ୍ଟି ଓ ଦର୍ଶନ', 'ଅଶ୍ୱିନୀ କୁମାର ନାଟ୍ୟମାନସ', 'ଓଡ଼ିଆ ବଙ୍ଗଳା ଅସମୀୟା ଲୋକନାଟକ' ଇତ୍ୟାଦିରୁ ତାଙ୍କ ସମାଲୋଚନା ଦୃଷ୍ଟିଭଙ୍ଗୀ ଅତ୍ୟନ୍ତ ସ୍ୱଚ୍ଛ । ସେ ପୁଣି ଅନେକ ପୁସ୍ତକ ସମ୍ପାଦନା କରିଛନ୍ତି । ଏହି ପୁସ୍ତକମାନଙ୍କ ମଧ୍ୟରେ ରହିଛି ମନୋରଞ୍ଜନ ନାଟ୍ୟ ଦିଗନ୍ତ, ନାଟ୍ୟକାର ରାମଚନ୍ଦ୍ର ସୃଷ୍ଟିବଳୟ, ଗୋପାଳ ଛୋଟରାୟ ନାଟ୍ୟମାନସ, ସାଥୀ ଓ ସାରଥୀ, ଗଣେଶ୍ୱର ସୃଷ୍ଟି ଓ ସମୀକ୍ଷା ଇତ୍ୟାଦି । ଏତଦ୍‌ବ୍ୟତୀତ ରମାଦେବୀଙ୍କ ସମ୍ପର୍କରେ ରଚନା କରିଛନ୍ତି ଜୀବନୀ ପୁସ୍ତକ 'ରମାଦେବୀ', 'ନିଆରା ମଣିଷ ପ୍ରାଣନାଥ ପଟ୍ଟନାୟକ' ଇତ୍ୟାଦି । ଶିଶୁମାନଙ୍କ ପାଇଁ ମଧ୍ୟ ଅନେକ ପୁସ୍ତକ ଲେଖିଛନ୍ତି । 'ରଢିକୋଷ' ତାଙ୍କର ଏକ ଚମତ୍କାର ରଢି ସଂକଳନ ଗ୍ରନ୍ଥ ।

ଡକ୍ଟର ନାରାୟଣଙ୍କ ସ୍ୱତନ୍ତ୍ର ପରିଚିତି ରହିଛି ନାଟକ କ୍ଷେତ୍ରରେ । ସେ ରଚନା କରିଛନ୍ତି ମଞ୍ଚ ନାଟକ, ଏକାଙ୍କିକା, ଶିଶୁ ନାଟକ, ବେତାର ନାଟକ, ଦୂରଦର୍ଶନ ନାଟକ, ଷ୍ଟ୍ରୀଟ୍ ଥିଏଟର, ଚଳଚ୍ଚିତ୍ର ଓ ଧାରାବାହିକ ନାଟକ ଇତ୍ୟାଦି । ଓ ସବାଶେଷ ଲୋକ, ଅସହାୟ ଈଶ୍ୱର, ନାହିଁ ନାହିଁର ନକ୍ସା, ଝଡ଼ର ଫୁଲ, ଯାହା କହି ହୁଏନା, ଏକ ଆତ୍ମହତ୍ୟା ସଂପର୍କରେ, ମହାପୁରୁଷ, କାଳିଦାସ କଥା, ଏମିତି ବି ହୁଏ, ଶେଷ ଅଙ୍କ, ମୂଷା, ଫ୍ରଣ୍ଟଲାଇନ୍, ଦରଜା ଖୋଲିଦିଅ, ଛୋଟକଥା, ସେମାନଙ୍କ ଖେଳ, ସେମାନଙ୍କ ଦୁନିଆ, ଅନ୍ଧକାରର

ପୂରବୀ, ଅମ୍ବାପଲୀ ସହିତ ଦିନେ, ସବୁଜ ଅନ୍ଧାର, ଅନ୍ୟ ଏକ ବର୍ତ୍ତମାନ, ଏକ ମୃତ ବ୍ୟକ୍ତି ସପକ୍ଷରେ, ଶେଷ ପାହାଚ, ଅପରାହ୍ଣର ଅବସୋସ, ଏକାନ୍ତ ଅନୁଭବ, ନିଷିଦ୍ଧ ସଂଳାପ, ଓଦାମାଟିର ସପନ, ମୋ ଜୀବନ ପଛେ, ଚେତନା, ପ୍ରାୟଶ୍ଚିତ୍ତ, ସୌଦାଗର, ମଣିଷ, ଆମ ଶ୍ରୀମତୀ, ଆତ୍ମାହୁତି, ମହାମୁକ୍ତି, ଦୂରଦିଗନ୍ତ, ଲାଟ ସାହେବ, ଆଶ୍ରାଖୋଜି ବୁଲୁଥିବା ଈଶ୍ୱର, କାହାଣୀ ସବା ଶେଷ ଲୋକର, ପୁନଶ୍ଚ ସଂଗ୍ରାମ, ପ୍ରଶ୍ନ, ସୁବର୍ଣ୍ଣ ସକାଳ, ଅଧାଦେଖା ସ୍ୱପ୍ନ, ଉପାସନା, ଝଡ଼, ହାଅନ୍ନ, ନିଷିଦ୍ଧ ସଂଳାପ, ନବ ପ୍ରଭାତ, ଆଉ ଏକ ବାଲ୍ମିକୀ ଇତ୍ୟାଦି ଏକାଙ୍କିକା, ଷ୍ଟ୍ରୀଟ୍ ଥିଏଟର, ନାଟକ । ଡକ୍ଟର ସାହୁଙ୍କର ନାଟକର ମୁଖ୍ୟତଃ ଚଳନ୍ତି ସମୟର ଘଟିଯାଉଥିବା ଘଟଣା, ସମସ୍ୟାଗୁଡ଼ିକ ମୁଖ୍ୟସ୍ଥାନ ଲାଭ କରିଛି । ତେଣୁ ତାଙ୍କର ଅଧିକାଂଶ ନାଟକ ସାମାଜିକ ବାସ୍ତବତାକୁ ଗୁରୁତ୍ୱ ଦେଉଥିବାରୁ ନାଟ୍ୟକାରଙ୍କ ସାମାଜିକ ପ୍ରତିବଦ୍ଧତା ଅତ୍ୟନ୍ତ ସ୍ପଷ୍ଟ । ନାଟ୍ୟକାର ନାରାୟଣ ସାହୁ ତାଙ୍କର କଳାସୃଷ୍ଟି ନିମିତ୍ତ ବିଭିନ୍ନ ଅନୁଷ୍ଠାନରୁ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି । ଡକ୍ଟର ସାହୁ ପ୍ରାପ୍ତ କରିଥିବା ପୁରସ୍କାର ଓ ସମ୍ମାନ ମଧ୍ୟରେ ରହିଛି – "ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ବେତାର ନାଟକ ପୁରସ୍କାର, ଶ୍ରେଷ୍ଠ ନାଟ୍ୟକାର ପୁରସ୍କାର, ନାଟ୍ୟକାର ବୀର କିଶୋର ରାୟ ସ୍ମୃତି ପୁରସ୍କାର, ଝଙ୍କାର ଜୀବନରଙ୍ଗ ସମ୍ମାନ, ଅଭୀପ୍ସା ସମ୍ମାନ, ଓଡ଼ିଶା ଟେଲି ଜର୍ଣ୍ଣାଲିଷ୍ଟ୍ ଆସୋସିଏସନ୍ ପୁରସ୍କାର, ସ୍ପନ୍ଦନ, ମନନ, ଶତାବ୍ଦୀର କଳାକାର ସମ୍ମାନ, ସଙ୍ଗୀତ ନାଟକ ଏକାଡ଼େମୀ ପୁରସ୍କାର ଇତ୍ୟାଦି ବହୁ ସମ୍ମାନ ଓ ପୁରସ୍କାର ।

ନାଟକ ଦୃଶ୍ୟ କାବ୍ୟ । ଦର୍ଶକ, ମଞ୍ଚ ଉପରେ ଅଭିନୟ କରୁଥିବା କଳାକାର ଓ ନାଟକର ଘଟଣାରାଜି ଗୋଟିଏ ସରଳ ରେଖାରେ ଦଣ୍ଡାୟମାନ ହୋଇ ନ ପାରିଲେ ନାଟକଟିର ମହତ୍ତ୍ୱ ସୁରକ୍ଷିତ ରହିପାରେ ନାହିଁ । ଏହି ଦୃଷ୍ଟିରୁ ସାହିତ୍ୟର ଅନ୍ୟାନ୍ୟ ବିଭାଗ ତୁଳନାରେ ନାଟକ ରଚନାରେ କେତେକ କ୍ଷେତ୍ରରେ ସ୍ୱାତନ୍ତ୍ୟ ବାରି ହୋଇପଡ଼ିଥାଏ । ନାଟ୍ୟକାର ସାହୁଙ୍କ ନାଟକଗୁଡ଼ିକୁ ତନ୍ନ ତନ୍ନ ଅନ୍ୱେଷଣ କଲେ ତାଙ୍କର ଅଧିକାଂଶ ନାଟକ ଯେ ସଫଳ, କହିବାରେ ଆଦୌ ଦ୍ୱିଧା ନାହିଁ । ଜଣେ ସମାଜ ସଚେତନ ସ୍ରଷ୍ଟା ଭାବରେ ସେ ଯତ୍‌ପରୋନାସ୍ତି ଚେଷ୍ଟା କରିଛନ୍ତି ବିଭିନ୍ନ ସାମାଜିକ ସମସ୍ୟାକୁ ନିଜ ନାଟକରେ ସ୍ଥାନ ଦେବା ପାଇଁ । ତେଣୁ ସାମ୍ପ୍ରତିକ ସମୟ, ସମାଜ, ବିଚାରଧାରାକୁ ଉପଜୀବ୍ୟ କରି ସେ ନାଟକ ରଚନା କରିଥିବାରୁ ତାଙ୍କ ନାଟକଗୁଡ଼ିକ ବେଶ୍ ଦର୍ଶକୀୟ ଆଦୃତି ଲାଭକରିବାରେ ସମର୍ଥ ହୋଇପାରିଛି ।

# କଥାବସ୍ତୁ

କୌଣସି ନାଟକର କଥାବସ୍ତୁ ବା ବିଷୟବସ୍ତୁ ତା'ର ଏକ ଗୁରୁତ୍ୱପୂର୍ଣ୍ଣ ବିଭାବ । ନାଟକର ଅନ୍ୟନାମ ଦୃଶ୍ୟକାବ୍ୟ । ମୁଖ୍ୟତଃ ଏହା ସଂଳାପଧର୍ମୀ ହେଲେ ହେଁ, ଚମତ୍କାର କଥାବସ୍ତୁ ଦର୍ଶକଙ୍କୁ ଶେଷପର୍ଯ୍ୟନ୍ତ ବାନ୍ଧି ରଖିଥାଏ ତାର ମାୟା ଜାଲରେ । ଏଥିପାଇଁ ଯେକୌଣସି ଉଚ୍ଚକୋଟୀର ନାଟ୍ୟକାର ପ୍ରଥମେ ଗୋଟିଏ ସୁନ୍ଦର କଥାବସ୍ତୁର ପରିକଳ୍ପନା କରିଥା'ନ୍ତି । ସାମ୍ପ୍ରତିକ ସମୟରେ ବହୁ ଘଟଣା ସଂଘଟିତ ହୋଇଚାଲିଛି । ଅତୀତରେ ନାଟ୍ୟକାରଗଣ କାଳ୍ପନିକ କଥାବସ୍ତୁକୁ ମୁଖ୍ୟତଃ ଉପଜୀବ୍ୟ କରି ନାଟକ ରଚନାରେ ମନୋନିବେଶ କରୁଥିଲେ । ପୌରାଣିକ, ଐତିହାସିକ ବା ସାମାଜିକ - ଯେକୌଣସି ନାଟକ ହେଉନା କାହିଁକି, ନାଟ୍ୟକାରଗଣ କଳ୍ପନାକୁ ହିଁ ଗୁରୁତ୍ୱ ପ୍ରଦାନ କରୁଥିଲେ । ସେଥିପାଇଁ ସେହି ନାଟକଗୁଡ଼ିକର ଆବେଦନ ଥିଲା କ୍ଷଣସ୍ଥାୟୀ । ଦର୍ଶକ ମନରେ ଏକ ଚିରନ୍ତନୀ ପ୍ରଭାବ ବିସ୍ତାର କରିବାକୁ ଏହି ନାଟକଗୁଡ଼ିକ ସମର୍ଥ ହୋଇପାରୁନଥିଲା । ସାମ୍ପ୍ରତିକ କାଳରେ ନାଟ୍ୟକାରଗଣ ଚଳନ୍ତି ଘଟଣାକୁ ସେମାନଙ୍କ ନାଟକର କଥାବସ୍ତୁ ଭାବରେ ନିର୍ବାଚନ କରୁଛନ୍ତି, ଯେଉଁ ଘଟଣାର ପ୍ରତ୍ୟକ୍ଷ ସାକ୍ଷୀ ହେଉଛନ୍ତି ଦର୍ଶକ । ଦର୍ଶକଗଣ ଚଳନ୍ତି ସମୟରେ ଯେଉଁ ଘଟଣାଟଗୁଡ଼ିକୁ ଅଙ୍ଗେ ନିଭେଇଥା'ନ୍ତି, ସେହି ଘଟଣାକୁ ଯେତେବେଳେ ମଞ୍ଚରେ ଚରିତ୍ରମାନଙ୍କ ମାଧ୍ୟମରେ ଦେଖନ୍ତି, ସ୍ୱାଭାବିକ ଭାବରେ ତଦ୍ୱାରା ସେମାନେ ପ୍ରଭାବିତ ହୋଇପଡ଼ନ୍ତି । ସାମ୍ପ୍ରତିକ ନାଟକରେ କଳ୍ପନାର କଙ୍କାଳ ଉପରେ ବାସ୍ତବ ଘଟଣାର ରକ୍ତ-ମାଂସ ପ୍ରଲେପିତ କରି ନାଟ୍ୟକାର ନାଟକର କଥାବସ୍ତୁକୁ ଗତିଶୀଳ କରାଉଥିବାରୁ ଏହା ଅଧିକ ଦର୍ଶକୀୟ ଆଦୃତି ଲାଭ କରିପାରିଛି ।

ଏହି ପ୍ରେକ୍ଷାପଟରେ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକର କଥାବସ୍ତୁକୁ ବିଚାର କରାଯାଇପାରେ । ପ୍ରଥମେ ଏହି ନାଟକଟି ପ୍ରକାଶ ପାଏ ୧୯୮୯ ମସିହାରେ, ଯେତେବେଳେ ବାବ୍ରୀ ମସ୍‌ଜିଦ୍ ଘଟଣାଟି ଜାତୀୟସ୍ତରରେ ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା । ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଭାବରେ ସମଗ୍ର ବିଶ୍ୱରେ ତା'ର ଏକ ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ ହେଁ ବାବ୍ରୀ ମସ୍‌ଜିଦ୍ ଭଙ୍ଗାଯିବା ଘଟଣା ଭାରତର ଧର୍ମ ନିରପେକ୍ଷତା ଉପରେ ପ୍ରଶ୍ନବାଚୀ ସୃଷ୍ଟି କରିଥିଲା । କେବଳ ଏହି ଘଟଣା ନୁହେଁ, ମନ୍ଦିର, ଗୀର୍ଜାକୁ ନେଇ ମଧ୍ୟ ଅନେକ ଅଘଟଣ ଘଟିଯାଉଛି ଭାରତବର୍ଷରେ । ଧର୍ମକୁ ନେଇ ରାଜନୀତି ଓ ବିଭେଦ ଗଣତନ୍ତ୍ର ଦେଶ ଭାରତକୁ ଅନ୍ୟମାନଙ୍କ ନିକଟରେ ହୀନପ୍ରଭ କରିଦେଇଛି । ବ୍ୟକ୍ତି ସ୍ୱାର୍ଥ ନିକଟରେ ବଳିପଡ଼ିଯାଉଛି ସାମୂହିକ ସ୍ୱାର୍ଥ । ଧର୍ମ ଅନ୍ତରାଳରେ ବ୍ୟଭିଚାରୀ ମଣିଷର କୁପ୍ରବୃତ୍ତି ହିନ୍ଦୁଧର୍ମର ଉଦାରତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛି । ନାଟକଟି ୧୯୮୯ ମସିହାରେ ରଚିତ ହୋଇଥିଲେ ହେଁ ୨୦୧୬ ମସିହା ଜୁଲାଇ ମାସର ରଥଯାତ୍ରା ପୂର୍ବରୁ ଓ ପରେ ଜଗନ୍ନାଥ ଏବଂ ରଥକୁ କେନ୍ଦ୍ର କରି ଯେଉଁ ଅପ୍ରୀତିକର ଘଟଣାଟି ଘଟିଗଲା, ନାଟ୍ୟକାର ୨୭ ବର୍ଷ ପୂର୍ବରୁ ପ୍ରକାଶ କରିଥିବା 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକରେ ଭବିଷ୍ୟତ ଦ୍ରଷ୍ଟା ପରି ତା'ର ସୂଚନାଟିଏ ଦେଇସାରିଥିଲେ । ବାସ୍ତବରେ ସ୍ରଷ୍ଟାମାନଙ୍କୁ କୁହାଯାଇଥାଏ କ୍ରାନ୍ତି ଦ୍ରଷ୍ଟା । ସେମାନେ ବର୍ତ୍ତମାନରେ ଥାଇ ମଧ୍ୟ ଅତୀତ ଓ ଭବିଷ୍ୟତକୁ ସେମାନଙ୍କ ଦିବ୍ୟ ନେତ୍ର ଦ୍ୱାରା ଦେଖିପାରିଥା'ନ୍ତି । 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକରେ ବର୍ତ୍ତମାନ ସଂଘଟିତ ଘଟଣାବଳୀର ଏହି ପରୋକ୍ଷ ସୂଚନାକୁ ଲକ୍ଷ୍ୟ କଲେ, ଏହାର ସତ୍ୟତାକୁ ଉପଲବ୍ଧି କରି ହୋଇଥାଏ ।

ଅତୀତରେ ମଣିଷର ଧାରଣା ଥିଲା - God has made man in his own image. ବର୍ତ୍ତମାନ ଈଶ୍ୱର ମଣିଷକୁ ନିଜ ଇଚ୍ଛାରେ ଗଢିଥିବା କଥାଟିକୁ କେହି ବିଶ୍ୱାସ କରିବେ ନାହିଁ ନିଶ୍ଚୟ । ଯେଉଁ ଧାର୍ମିକ ଭାବନା ଏକଦା ମଣିଷକୁ ଦୃଢ ଭାବରେ ବାନ୍ଧି ରଖିଥିଲା, ତାହା ସମ୍ପୂର୍ଣ୍ଣ ଦୁର୍ବଳ ହୋଇଯାଇଛି । ଈଶ୍ୱରଙ୍କ ଅସହାୟତା ପ୍ରତି ବରଂ ମଣିଷ ଅଧିକ ଦରଦୀ ହୋଇଛି । ମଣିଷ ଏବେ ଦୃଢବିଶ୍ୱାସୀ ଯେ - Man has made God in his own image. ମଣିଷ ନିଜ ରୁଚି ଅନୁଯାୟୀ ଈଶ୍ୱରଙ୍କୁ ଗଢୁଛି । ଅର୍ଥାତ୍ ମଣିଷ ଖିଆଲ ନିକଟରେ ଆଜି ଈଶ୍ୱର ବନ୍ଦୀ । 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକଟିକୁ ପଢିଲେ ଏହି ଧାରଣା ନିଶ୍ଚିତ ଭାବରେ ଅଧିକ ଦୃଢୀଭୂତ ହୋଇଥାଏ ।

'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକର ମୁଖ୍ୟ ଚରିତ୍ର ଈଶ୍ୱର, ଯିଏ ନିଜ ସ୍ଥିତି ପ୍ରତି ସନ୍ଦିହାନ । ଆମ ପରମ୍ପରାରେ ଈଶ୍ୱର ସର୍ବଶକ୍ତିମାନ । ଅଥଚ ଏହି ନାଟକଟିର

ଈଶ୍ୱର ଜଣେ ଅସହାୟ ଚରିତ୍ର । ପୂର୍ବରୁ ସୂଚନା ଦିଆଯାଇ କୁହାଯାଇଛି ଯେ ବାବ୍ରୀ ମସଜିଦ୍ ଭଙ୍ଗାଯିବା ଘଟଣା ଏହାର ପୃଷ୍ଠଭୂମି । ମାତ୍ର ସାମସମୟିକ ସମାଜର ସଂଘଟିତ ଅନେକ ଘଟଣାକୁ ନାଟକରେ ପ୍ରତ୍ୟକ୍ଷ କରି ହୋଇଥାଏ । ବାବ୍ରୀ ମସଜିଦ୍ ଓ ରାମ ମନ୍ଦିରକୁ ନେଇ ମୁସଲମାନ ଏବଂ ହିନ୍ଦୁମାନଙ୍କ ମଧ୍ୟରେ ଯେଉଁ ମନାନ୍ତର ଓ ମତାନ୍ତର ତଥା ସେହି ଘଟଣାକୁ କେନ୍ଦ୍ର କରି ଯେଉଁ ଅଶୋଭନୀୟ ପରିସ୍ଥିତି ସୃଷ୍ଟି-ତାହା ହେଉଛି ଏହି ନାଟକର ମୂଳ ପ୍ରେରଣା । ଧର୍ମକୁ ନେଇ ମଣିଷ ମଧ୍ୟରେ ଯେଉଁ ଉଦାରତା ଲକ୍ଷ୍ୟ କରାଯିବା କଥା, ତାହା ସମ୍ପ୍ରତି ସୁଦୂର ପରାହତ । 'ସମୟ' ବା କାଳ ହେଉଛି ବଡ଼ ସାକ୍ଷୀ । ବୋଧହୁଏ ସେହି କାରଣରୁ ନାଟ୍ୟକାର ଏଥିରେ 'ସମୟ'କୁ ଏକ ଚରିତ୍ର ଭାବରେ ଉପସ୍ଥାପନା କରିବାକୁ ଉଚିତ୍ ମନେ କରିଛନ୍ତି ।

ପ୍ରଥମ ଦୃଶ୍ୟରେ ଈଶ୍ୱରଙ୍କୁ ଦର୍ଶକ ଭେଟେ ଏକ ଭିନ୍ନ ଚରିତ୍ର ଭାବରେ । ନାମ ଈଶ୍ୱର, ମାତ୍ର ଭାବଭଙ୍ଗୀ ଆଚରଣରେ ଏକପ୍ରକାର ହାସ୍ୟୋପଦୀପକ ଚରିତ୍ର ରୂପେ ଉପସ୍ଥିତ, ଯିଏ ଓସ୍ତାଦ୍‌ଙ୍କ ଆଜ୍ଞାନୁବର୍ତ୍ତୀ । ଘଟଣା ପ୍ରବାହରେ ତାଙ୍କ ଚରିତ୍ରର ରୂପାନ୍ତରଣ ଘଟେ ଓ ସେ ହୁଅନ୍ତି ନାଟକର ମୁଖ୍ୟ ଚରିତ୍ର । ଭୋପାଳର ଗ୍ୟାସ୍ ଦୁର୍ଘଟଣାକୁ ମଧ୍ୟ ନାଟକର କଥାବସ୍ତୁ ଭିତରକୁ ଟାଣି ନିଆ ହୋଇ ଆସିଛି । ଏହି ଦୁର୍ଘଟଣାରେ ଅନେକବ୍ୟକ୍ତି ହରାଇଥିଲେ ନିଜର ଆଖି, ହାତ ଗୋଡ଼ । ବହୁ ବ୍ୟକ୍ତି ମୃତ୍ୟୁବରଣ କରିଥଲେ । ଅନେକ ଶିଶୁଙ୍କ ଅପମୃତ୍ୟୁ ହୋଇଥିଲା ଏବଂ ନାରୀ ମାତା ହେବାର ସୌଭାଗ୍ୟରୁ ବଞ୍ଚିତ ହୋଇଥିଲେ । ସେହି ହତଭାଗ୍ୟଙ୍କ ମଧ୍ୟରେ ଥିଲେ ନାଟ୍ୟବର୍ଣ୍ଣିତ ମେରୀ ଓ ଯୋଶେଫ୍ । ଏହି ଦୁଇଜଣ ବହୁ ଆଶା ନେଇ ଆସିଥିଲେ ଈଶ୍ୱର ଧାମକୁ । ମନରେ ଅଦମ୍ୟ ବିଶ୍ୱାସ, ଈଶ୍ୱରଙ୍କ ଆଶୀର୍ବାଦ ମିଳିଲେ ପୁଣି ମେରୀ ମା' ହୋଇପାରିବ । ଈଶ୍ୱରଙ୍କ ନିକଟରେ ପୁଣି ଅସମ୍ଭବ କ'ଣ ? କିନ୍ତୁ ସେମାନେ କିପରି ସରଳ ମନ ନେଇ ବୁଝିପାରିବେ ଏହି ଧାମର ମହାସେବକମାନଙ୍କର କୁତ୍ସିତ, କଦର୍ଯ୍ୟ ମନୋବୃତ୍ତିକୁ । ଜଗତର ନାଥଙ୍କ ନିକଟରେ ଜାତି କାହିଁ ? ସମସ୍ତେ ତାଙ୍କ ସନ୍ତାନ, ତେଣୁ ବିଧର୍ମୀ ଧାରଣା ସେଠାରେ ମୂଲ୍ୟହୀନ । ଅଥଚ କିଛି ରକ୍ଷଣଶୀଳ ସ୍ୱାର୍ଥ ଭଣ୍ଡ ସେବକ ନିଜର ଫାଇଦା ପାଇଁ ମଣିଷ ମଣିଷ ମଧ୍ୟରେ ଧର୍ମର ପ୍ରାଚୀର, ଜାତିର ପ୍ରାଚୀର ଠିଆ କରନ୍ତି । ଅନ୍ୟମାନଙ୍କ ପାଇଁ ରହିଥାଏ ଲକ୍ଷ୍ମଣରେଖା, ମାତ୍ର ସେମାନେ ସେହି ଲକ୍ଷ୍ମଣରେଖାକୁ ସହଜରେ ଅତିକ୍ରମ କରିଯା'ନ୍ତି । ନାଟ୍ୟବର୍ଣ୍ଣିତ ମହାସେବକ ଚରିତ୍ର ମଧ୍ୟରେ ଏହି ଭଣ୍ଡାମୀ ଓ ଶଠତାର ଲକ୍ଷଣ ବେଶ୍ ପରିସ୍ଫୁଟ । ଯୋଶେଫ୍‌ଙ୍କ ପ୍ରଶ୍ନର ଉତ୍ତର ତା' ନିକଟରେ ନାହିଁ । ଧର୍ମପ୍ରାଣ ପତିପତ୍ନୀଙ୍କ ମଧ୍ୟରୁ ମେରୀକୁ ଗୁପ୍ତରେ ଈଶ୍ୱରଙ୍କ ଦର୍ଶନ କରାଇଦେବାର ପ୍ରତିଶ୍ରୁତି ଦେଇ ତାକୁ ଧର୍ଷଣ କରେ ଏବଂ ଧର୍ଷଣ ପରେ

ନିଜର ପାପ ଲୁଚାଇବାକୁ ଯାଇ ନିରୀହା ମେରୀକୁ ହତ୍ୟା କରି ସମୁଦ୍ର ବାଲିରେ ପୋପାଡ଼ି ଦିଏ । ସମସ୍ତଙ୍କ ଅଜାଣତରେ ଦେବଦାସୀ ଲୀଳାମୟୀ ସହିତ ଅବୈଧ ସମ୍ପର୍କ ସ୍ଥାପନ କରେ । ଦେବଦାସୀ ଈଶ୍ୱର ସମର୍ପିତା ଜାଣି ମଧ୍ୟ ମହାସେବକ ଏପରି ହୀନ ପାପକାର୍ଯ୍ୟ କରିବାକୁ ସାମାନ୍ୟ ମାତ୍ର କୁଣ୍ଠାପ୍ରକାଶ କରେ ନାହିଁ । ସ୍ୱୟଂ ଈଶ୍ୱରଙ୍କ ନିକଟରେ ଆସ୍ପର୍ଦ୍ଧା କରି କହିପାରେ – "ଆସନ୍ତା କାଲି ସର୍ବ ସମ୍ମୁଖରେ ମୁଁ ଘୋଷଣା କରିବି, ଈଶ୍ୱର ନିବାସରୁ ତମର ଆବଶ୍ୟକତା ଶେଷ ହୋଇଯାଇଛି । ଆମକୁ ଆଉ ଏକ ନୂଆ ଈଶ୍ୱରର ସନ୍ଧାନ କରିବାକୁ ହେବ ।" କେବଳ ସେତିକି ନୁହେଁ, ନିଜର ପାପକୁ ମଧ୍ୟ ଈଶ୍ୱରଙ୍କ ମୁଣ୍ଡରେ ବୋଳି ଦେଇପାରେ । ନିଜର ପଦ ଓ କ୍ଷମତା ବଳରେ ରାଜନୀତିର ବୈତରଣୀ ପାର ହୋଇ ରାଜନେତା ହେବାର ସମସ୍ତ ଯୋଜନା ଚତୁରତାର ସହିତ ପ୍ରସ୍ତୁତ କରିଚାଲେ । ଈଶ୍ୱରଙ୍କୁ ମୂକ କରି ଦୃପ୍ତ କଣ୍ଠରେ ହିନ୍ଦୁତ୍ୱର ଘୋଷଣା କରେ । ସୁଲେମାନ ଓ ମହାସେବକର ଯୁକ୍ତି ଓ ସଂକୀର୍ଣ୍ଣ ଚିନ୍ତାଧାରା ନିକଟରେ ବଡ଼ ଅସହାୟ ଦେଖାଯା'ନ୍ତି ଈଶ୍ୱର । ସଂପ୍ରତି ରଥ ଉପରକୁ ଭକ୍ତଙ୍କର ଚଢିବାର ଅଧିକାର ଅଛି କି ନାହିଁ, ସେଥିପାଇଁ ମାନ୍ୟବର ଉଚ୍ଚ ନ୍ୟାୟଳୟ, ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟ ଏବଂ ଠାକୁର ରାଜାଙ୍କ ମତାମତ ସତ୍ତ୍ୱେ କିଛି ମୂଢ ସେବାୟତ ତାହାକୁ ଭ୍ରୂକ୍ଷେପ କରନ୍ତି ନାହିଁ । ଏହି ଅଘଟଣର ପ୍ରାକ୍ –ସୂଚନା 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର'ରେ ଦେଖିବାକୁ ମିଳେ । ମାତ୍ର ଭିନ୍ନ ପ୍ରେକ୍ଷାପଟ୍ଟରେ । ଧର୍ମ କ୍ଷେତ୍ରରୁ ରାଜନୀତି ପର୍ଯ୍ୟନ୍ତ ବହୁ ଘଟଣାକୁ ଚମତ୍କାର ଢଙ୍ଗରେ ସୂଚନାତ୍ମକ ଭାବେ ରୂପାୟିତ କରାଯାଇଛି ଏହି ନାଟକରେ ।

ଆଶ୍ରା ଖୋଜି ବୁଲୁଥିବା ଈଶ୍ୱରରେ ସମୟର ସ୍ୱର :- ପ୍ରତ୍ୟେକ ସ୍ରଷ୍ଟା ତା' ସମୟର ସଚେତନ ବିନ୍ଦୁ । ନାଟକ କ୍ଷେତ୍ରରେ ଏହା ଅଧିକ ପ୍ରଯୁଜ୍ୟ । କୁହାଯାଏ ନାଟକ ମାଧ୍ୟମରେ ସାମସମୟିକ ସମାଜ ପ୍ରତିଫଳିତ ହୋଇଥାଏ । ନାଟକର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ଏହା ଦର୍ଶକଙ୍କୁ ପ୍ରତ୍ୟକ୍ଷ ଭାବରେ ଦୃଶ୍ୟ ହୋଇଥାଏ ଓ ତା'ରି ମାଧ୍ୟମରେ ନାଟ୍ୟକାର ନିଜର ଅଭିଳଷିତ ବକ୍ତବ୍ୟ ପ୍ରକାଶ କରିବାକୁ ସୁଯୋଗ ଲାଭ କରିଥାଏ । ତେଣୁ ନାଟକ ପ୍ରତ୍ୟକ୍ଷ ଭାବରେ ସମାଜକୁ ବାର୍ତ୍ତାଟିଏ ଦେଇପାରେ । ଆଜି ନାଟକ କେବଳ ମନୋରଞ୍ଜନ ଉଦ୍ଦେଶ୍ୟରେ ରଚିତ ହେଉନାହିଁ ଯଦିଓ ମନୋରଞ୍ଜନ ଏହାର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଦିଗ । ଆଜିର ନାଟକରେ ସମାଜ ଚରିତ୍ର ମାଧ୍ୟମରେ କଥା କୁହେ । ସମାଜର ସଂଘଟିତ ବିଭିନ୍ନ ଘଟଣା ଏଥିରେ କଳାତ୍ମକ ଢଙ୍ଗରେ ରୂପଲାଭ କରୁଥିବାରୁ ନାଟକକୁ କୁହାଯାଇଥାଏ ଏକ 'ସମାଜ ସଚେତନ କଳା ।'

ବିଂଶ ଓ ଏକବିଂଶ ଶତାବ୍ଦୀର ବିଶ୍ୱ ହେଉଛି ସମସ୍ୟା ବହୁଳ ବିଶ୍ୱ । ଏଠାରେ ପ୍ରତିଦିନ ବିଭିନ୍ନ ଘଟଣା ଅଦ୍ଭୁତ ଭାବରେ ଘଟି ଚାଲିଥାଏ । ଜଣେ ସମାଜ ସଚେତନ ଶିଳ୍ପୀ ଏହି ଘଟଣାଗୁଡ଼ିକ ପ୍ରତି ଆଖି ବୁଜିଦେଇ ପାରିବ ନାହିଁ । 'ଆଶ୍ରା ଖୋଜିବୁଲୁଥିବା ଈଶ୍ୱର' ନାଟକଟିର ରଚନାକାଳ ଗତ ଶତକର ନବେ ଦଶକ । ଏହା ମଧ୍ୟରେ ଗୋଟିଏ ନୂଆ ଶତାବ୍ଦୀ ଆସିଯାଇଛି କ୍ୟାଲେଣ୍ଡର ପୃଷ୍ଠାରେ । ନବେ ଦଶକର ଭାରତ ବା ପୃଥିବୀ ଏବଂ ଏକବିଂଶ ଶତକର ଦ୍ୱିତୀୟ ଦଶକର ପୃଥିବୀ ବା ଭାରତ ମଧ୍ୟରେ ଅନେକ ପାର୍ଥକ୍ୟ । ବିଶ୍ୱରେ ଯେପରି ବିଭିନ୍ନ ଘଟଣା ବିଶ୍ୱ ରାଜନୀତିକୁ ପ୍ରଭାବିତ କରିଛି, ଭାରତରେ ସେହିପରି ଅନେକ ଘଟଣା ଭାରତୀୟ ରାଜନୀତି ଓ ସମାଜକୁ ପ୍ରଭାବିତ କରିଛି । ଏହି ନାଟକ ରଚନା ବେଳକୁ ଯେଉଁ ଦୁଇଟି ଘଟଣା ବିଶେଷ ଭାବରେ ଭାରତର ହଟଚମଟ ସୃଷ୍ଟି କରିଥିଲା ତାହା ହେଉଛି ବାବ୍ରୀ ମସ୍‌ଜିଦ୍ ଭାଙ୍ଗିବା ଘଟଣା ଓ ଭୋପାଳର ଗ୍ୟାସ୍ ଦୁର୍ଘଟଣା । ନାଟକରେ ଏହି ଦୁଇଟି ଘଟଣା ଗୁରୁତ୍ୱ ପାଇଛି । ଭାରତୀୟ ସାମାଜିକ ବ୍ୟବସ୍ଥା ତଥା ଧର୍ମ ନିରପେକ୍ଷତା ପ୍ରତି ପ୍ରଶ୍ନ ଉଠିଛି । ଏହାସହିତ ଓଡ଼ିଶାର ଯେଉଁ ଘଟଣାଟି ନାଟକରେ ଗୁରୁତ୍ୱ ପାଇଛି ତାହା ହେଲା ଶ୍ରୀଜଗନ୍ନାଥ ମନ୍ଦିରର କିଛି ଅବ୍ୟବସ୍ଥା । ଅଥଚ ନାଟ୍ୟକାର ଯେତେବେଳେ ସେହି ନାଟକର ନୂତନ ସଂସ୍କରଣ ୨୦୧୬ ମସିହାରେ ପ୍ରକାଶ କରୁଛନ୍ତି, ସେଥିରେ ନିକଟ ଅତୀତରେ ଓଡ଼ିଶାରେ ଘଟିଯାଇଥିବା ଆଉ କେତେକ ଚର୍ଚ୍ଚିତ ଘଟଣା ରୂପ ପାଇଛି । ସେହି ଚର୍ଚ୍ଚିତ ଘଟଣାମାନଙ୍କ ମଧ୍ୟରେ ରହିଛି ବରଗଡ଼ର ଉମା-ମାହେଶ୍ୱରୀ ମନ୍ଦିରରୁ ସୁନା ଅଳଙ୍କାର ଚୋରି, ଭଦ୍ରକର ଦୁଲାଦେଇ ମନ୍ଦିରରୁ ଠାକୁରାଣୀଙ୍କମନ୍ଦିର ଭାଙ୍ଗି ଲୁଟିନେବା, ଲିଙ୍ଗରାଜ ଓ ବିରଜା ମନ୍ଦିରରୁ ଚୋରି ଘଟଣା, ବନଯାଗ ଯାତ୍ରା, ଦାରୁ ଫିକ୍‌ସିଂ, ବ୍ରହ୍ମ ବିଭ୍ରାଟ ଆଦି ଘଟଣା । ନାଟକର ବିଭିନ୍ନ ଦୃଶ୍ୟରେ ଏହି ଚର୍ଚ୍ଚିତ ଘଟଣାଗୁଡ଼ିକର ରୋଚକ ଅଭିବ୍ୟକ୍ତି ପ୍ରକାଶ ପାଇଛି ନାଟ୍ୟ ବର୍ଣ୍ଣିତ ଚରିତ୍ରମାନଙ୍କ ମାଧ୍ୟମରେ ।

ଗୋଟିଏ ସମୟରେ ବାବ୍ରୀ ମସ୍‌ଜିଦ୍ ଘଟଣାକୁ ନେଇ ଭାରତର ରାଜନୀତି ସରଗରମ ହୋଇ ଉଠିଥିଲା । ଭାରତର ବିଭିନ୍ନ ରାଜନୈତିକ ଦଳ ଏହି ଘଟଣାକୁ ନେଇ ରାଜନୀତି କରିଥିଲେ । ଆନ୍ତର୍ଜାତୀୟ ସ୍ତରରେ ମଧ୍ୟ ଏହାର ପ୍ରତିକ୍ରିୟା ପରିଲକ୍ଷିତ ହୋଇଥିଲା । ନାଟ୍ୟକାର ଅଯୋଧ୍ୟାରେ ସଂଘଟିତ ସେହି ସାମ୍ପ୍ରଦାୟିକ ସଂଘର୍ଷକୁ ସୂଚନାତ୍ମକ ଢଙ୍ଗରେ ପରିବେଷଣକରି ନିଜ ସମୟ ସଚେତନତାର ପ୍ରମାଣ ଦେଇଛନ୍ତି । ଏହିନାଟକର ଅନ୍ୟତମ ଉଲ୍ଲେଖଯୋଗ୍ୟ ଚରିତ୍ର ହେଉଛି 'ସମୟ' । 'ସମୟ' ଚରିତ୍ର ମାଧ୍ୟମରେ ହିଁ ପ୍ରକାଶ ପାଇଛି ନାଟ୍ୟକାରଙ୍କ ସମୟ ସଚେତନତା । କାଳର ଗତି ଅତ୍ୟନ୍ତ କୁଟିଳ । ତାର ଗତି ମଧ୍ୟ ଅବାରିତ । ସମୟ ରୂପକ ଦର୍ପଣରେ କାଳ

ଧରାଦିଏ କେବଳ କାଳାତୀତ ହେବା ପାଇଁ ନୁହେଁ, ବରଂ ବର୍ତ୍ତମାନ ପିଢ଼ିକୁ ସଚେତନ କରାଇ ଦେବା ପାଇଁ । ଇତିହାସ ତା' ଗର୍ଭରେ ଅନେକ ଘଟଣାକୁ ଲିପିବଦ୍ଧ କଲେ ହେଁ, ସ୍ମୃତିଭ୍ରମ ମଣିଷ ତାକୁ ଭୁଲିଯାଏ ଅନାୟାସରେ । କେବଳ 'ସମୟ' ହିଁ ତାକୁ ସଚେତନ କରାଇ ଦେଇଥାଏ ଏବଂ ଭବିଷ୍ୟତ ପାଇଁ ସତର୍କ ବି କରିଦିଏ । ଏହି ଦୃଷ୍ଟିରୁ ନାଟ୍ୟକାରଙ୍କ 'ସମୟ' ଚରିତ୍ରର ପ୍ରାସଙ୍ଗିକତାକୁ ଅସ୍ୱୀକାର କରାଯାଇନପାରେ । ଏକଦା ଭୋପାଳଗ୍ୟାସ୍ ଦୁର୍ଘଟଣା କେବଳ ଭାରତ ନୁହେଁ, ଆନ୍ତର୍ଜାତୀୟ ସ୍ତରରେ ମଧ୍ୟ ଆଲୋଡ଼ନ ସୃଷ୍ଟି କରିଥିଲା । ଭୋପାଳର ୟୁନିଅନ୍ କାରବାଇଡ୍ ଗ୍ୟାସ୍ ଦୁର୍ଘଟଣା ଯେତିକି ଲୋକଙ୍କୁ ମାରିଥିଲା, ତାହା ଅପେକ୍ଷା ଆହୁରି ଅନେକ ଲୋକଙ୍କ ପଙ୍ଗୁ ଓ ଅଥର୍ବ କରିଥିଲା । ମା' ହରାଇଥିଲା ସନ୍ତାନ, ସ୍ୱାମୀ ହରାଇଥିଲା ପତ୍ନୀ ଓ ପତ୍ନୀ ସ୍ୱାମୀକୁ । ସରକାରୀ ହିସାବ ଅପେକ୍ଷା ବହୁଅଧିକ ହୋଇଥିଲେ କ୍ଷତିଗ୍ରସ୍ତ । ଅନେକ ନାରୀ ନିଜ ମାତୃତ୍ୱ ହରାଇ ବିକଳରେ କ୍ରନ୍ଦନ କରୁଥିଲେ । ନାଟ୍ୟବର୍ଣ୍ଣିତ ମେରୀ ଚରିତ୍ର ହେଉଛି ସେହିପରି କ୍ଷତିଗ୍ରସ୍ତା ଏକ ବିଫଳ ନାରୀ ଚରିତ୍ର । ମେରୀ କେବଳ ତା'ର ନାରୀତ୍ୱ ହରାଇନଥିଲା କିମ୍ବା ଯୋଶେଫ୍ ଚକ୍ଷୁ, ବରଂ ଉଭୟ ନିଜର ଏକମାତ୍ର ସନ୍ତାନ ଲୁରାକୁ ମଧ୍ୟ ହରାଇ ବସିଥିଲେ । ରାଜନୀତିର ପଶାପାଲିରେ କମ୍ପାନୀର ବଡ଼ ପଦାଧିକାରୀ ଓ ମାଲିକ ଖସିଗଲେ । ଯାହା କ୍ଷତିପୂରଣ ଘୋଷିତ ହେଲା, ତାହା ଥିଲା ଧର୍ମକୁ ଆଖିଠାର ମାତ୍ର । ଆମ ସମୟର ଏହି କ୍ରୂର ଘଟଣାକୁ ନାଟ୍ୟକାର ମେରୀ ଯୋଶେଫ୍‌ର ଦୁଃଖଦ ଜୀବନରୁ ଖୋଜିଛନ୍ତି ।

ନାଟକରେ ବର୍ଣ୍ଣିତ ଏହି ସମୟର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଉଛି ଈଶ୍ୱର ନିବାସ ପ୍ରକାରାନ୍ତରେ ମନ୍ଦିରରେ ଚାଲିଥିବା ଅଘଟଣର ସ୍ୱରୂପ ଉନ୍ମୋଚନ । ଈଶ୍ୱରଙ୍କ ଉପରେ ବିଶ୍ୱାସ ସ୍ଥାପନ କରି ଭକ୍ତ ଆସିଥାଏ ତାଙ୍କ ଧାମକୁ । ମାତ୍ର ସେଠାରେ ଭକ୍ତଙ୍କର ଭକ୍ତିକୁ ଚତୁରତାର ସହିତ ଶୋଷଣ କରାଯାଏ । ଜାତି ନାମରେ ବଞ୍ଚିତ କରାଯାଏ ଭକ୍ତଙ୍କୁ ମନ୍ଦିର ପ୍ରବେଶ ତଥା ଠାକୁର ଦର୍ଶନ ପାଇଁ । ସରଳ ଭକ୍ତର ବିଶ୍ୱାସକୁ ଅପହରଣ କରାଯାଏ । ମେରୀ ପରି ନିରୀହା, ଈଶ୍ୱରପ୍ରାଣାକୁ ଦର୍ଶନ ନାମରେ ଯୌନଶୋଷଣ କରାଯାଇ ହତ୍ୟା କରାଯାଏ ଏବଂ ମହାସେବକଙ୍କ ପରି ବ୍ୟକ୍ତି ଲମ୍ପଟତା'ର ସମସ୍ତ ପାହାଚକୁ ଅତିକ୍ରମ କରିଯାଇ ନିଜ ଦୋଷ ଈଶ୍ୱରଙ୍କ ଉପରେ ଲଦି ଦେଇଥାଏ । ନିଜର କ୍ଷମତାକୁ ଅପବ୍ୟବହାର କରି ଦେବଦାସୀ ସହିତ ଅନୈତିକ ସମ୍ପର୍କ ସ୍ଥାପନ କରେ ଅଥଚ ଈଶ୍ୱରଙ୍କ ପ୍ରତିବାଦର ଉତ୍ତର ଦେଇ କୁହେ – 'ଆଉ ଈଶ୍ୱର, ଆଉ ନିର୍ମଳ ଭାବମୂର୍ତ୍ତି ଅବତାରଣା କରିବା ଦରକାର ନାହିଁ । ଆସନ୍ତାକାଲି ସର୍ବସମ୍ମୁଖରେ ମୁଁ ଘୋଷଣା କରିବି, ଈଶ୍ୱର ନିବାସରୁ ତମର ଆବଶ୍ୟକତା ଶେଷ ହୋଇଯାଇଛି । ଆମକୁ ଆଉ ଏକ ନୂଆ ଈଶ୍ୱରର ସନ୍ଧାନ କରିବାକୁ ହେବ ।'ନାରର

ଈଶ୍ୱରଙ୍କୁ ମୂକ ହେବାକୁ ବାଧ କରୁଛି ମହାସେବକ । ବିଭିନ୍ନ ସମୟରେ ଈଶ୍ୱର ନିବାସରେ ସଂଘଟିତ ଅନେକ ଅଘଟଣାକୁ ନାଟ୍ୟକାର ସୂଚନାତ୍ମକ ଭାବରେ କେତୋଟି ଘଟଣା ମଧ୍ୟରେ ଉଲ୍ଲେଖ କରିବାକୁ ଚେଷ୍ଟା କରିଛନ୍ତି ।

ସମୟର ସ୍ୱରକୁ ବେଶ୍ ଅନୁଭବ କରିହୁଏ ନାଟ୍ୟବର୍ଣ୍ଣିତ ବିଭିନ୍ନ ଘଟଣା ମଧ୍ୟରେ । ସେଥିପାଇଁ 'ସମୟ' ହୋଇଯାଇଛି ଗୋଟିଏ ବଳିଷ୍ଠ ଚରିତ୍ର ଏହି ନାଟକରେ । ଏହି ଚରିତ୍ର ମାଧ୍ୟମରେ ନାଟ୍ୟକାର ଏକ ନିର୍ଦ୍ଦିଷ୍ଟ ବାର୍ତ୍ତା ଦେବାକୁ ଚେଷ୍ଟା କରିଛନ୍ତି । ଧର୍ମ ନାମରେ ଶଠତା ଓ ପ୍ରତାରଣା ବର୍ତ୍ତମାନର ସମାଜକୁ କଳୁଷିତ କରିଚାଲିଛି । ଧର୍ମକୁ ନେଇ ଜାତି ଜାତି ଓ ବ୍ୟକ୍ତିବ୍ୟକ୍ତି ମଧ୍ୟରେ ସଂଘର୍ଷ ଏବଂ ଅସନ୍ତୋଷ ଈଶ୍ୱରଙ୍କ ପ୍ରତି ସୃଷ୍ଟି କରିଛି ପ୍ରଶ୍ନବାଚୀ । ସେଥିପାଇଁ 'ସମୟ' ସ୍ୱରରେ ଈଶ୍ୱରଙ୍କୁ କୈଫିୟତ ମଗାଯାଇଛି – 'ତମେ ତ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ପାଇଁ ସମାନ । ତେବେ କ'ଣ ପାଇଁ ଏ ବିରୋଧାଭାସ ? କ'ଣ ପାଇଁ ଜାତି ଜାତି ମଧ୍ୟରେ ସଂଘର୍ଷ ? କ'ଣ ପାଇଁ ଧର୍ମ ଧର୍ମ ମଧ୍ୟରେ ବିଦ୍ୱେଷ ? ଜବାବ ଦିଅ ।' 'ନାଟ୍ୟକାର ସାମସମୟିକ ବହୁ ଘଟଣାକୁ ନାଟକର କଥାବସ୍ତୁରେ ସାମିଲ୍ କରି ଆମ ସମୟର ସ୍ୱରକୁ ଉଚ୍ଚକିତ କରିବାକୁ ଚେଷ୍ଟା କରିଛନ୍ତି । ମଧ୍ୟପ୍ରଦେଶର ବିଳାସପୁର ଜିଲ୍ଲାର ପଣ୍ଡାତରାଇ ଗ୍ରାମର ଏକ ମନ୍ଦିରରେ ହରିଜନଙ୍କର ବଳପୂର୍ବକ ପ୍ରବେଶ ଉଦ୍ୟମ ଏବଂ ସବର୍ଣ୍ଣ–ହରିଜନ ସଂଘର୍ଷରେ ଏକାଧିକ ବ୍ୟକ୍ତି ମୃତ ଓ ଆହତ, ଦିଲ୍ଲୀ ଗୁରୁଦ୍ୱାରରେ ସଂଘର୍ଷ, ବାଲିଅନ୍ତା ଥାନା ଅନ୍ତର୍ଗତ ବାଳକାଟିସ୍ଥିତ ମା' ଦୁଲ୍ଲାଦେବୀ ମନ୍ଦିରର ହୁଣ୍ଡିଭାଙ୍ଗି ଲୁଟ୍, ବରଗଡ଼ରେ ଉମା ମାହେଶ୍ୱରୀ ମନ୍ଦିରରୁ ସୁନା ମୂର୍ତ୍ତି ଚୋରି, ରାଜନଗର କେରେଡାଗଡ଼ ଜଗନ୍ନାଥ ମନ୍ଦିରକୁ ଦଳିତମାନଙ୍କ ପ୍ରବେଶ ନିଷେଧ, ଅଷ୍ଟ୍ରେଲୀୟ ମିଶ୍‌ନାରୀ ଗ୍ରାହମ ଷ୍ଟେନସ୍ ପୋଡ଼ି ମାମଲା, ଶ୍ରୀଜୀଉଙ୍କ ରଥଯାତ୍ରାରେ ସେବାୟତମାନଙ୍କ ଜିଲ୍ଲାପାଳଙ୍କୁ ଦୁର୍ବ୍ୟବହାର, ପଞ୍ଜାବର ଜଗନ୍ନାଥ ମନ୍ଦିରରେ କଟା ଗୋରୁମୁଣ୍ଡ – ଏମିତି ବହୁ ଅପ୍ରୀତିକର ଘଟଣାକୁ ଶବଳିତ କରି ନାଟ୍ୟକାର ସମୟର ସ୍ୱରକୁ ଦର୍ଶକଙ୍କ ନିକଟରେ ପହଞ୍ଚାଇବାକୁ ଚେଷ୍ଟା କରିଛନ୍ତି ।

ବର୍ତ୍ତମାନ ସମୟରେ ମୂଲ୍ୟବୋଧଜନିତ ସଂକଟ, ନୈତିକ ଆଦର୍ଶର ଅଧୋଗତି, ରାଜନୀତିକ ଭ୍ରଷ୍ଟାଚାର, ଧର୍ମ ନାମରେ ପ୍ରତାରଣା ଓ ବ୍ୟକ୍ତି ସ୍ୱାର୍ଥ ଉପରେ ଗୁରୁତ୍ୱ, ବସ୍ତୁବାଦୀ ଚିନ୍ତାଧାରା ସମାଜ ଓ ବ୍ୟକ୍ତି ଜୀବନକୁ ବିପର୍ଯ୍ୟସ୍ତ କରି ଚାଲିଛି । ଏହି କାରଣରୁ ଆଜି କେବଳ ମଣିଷର ସ୍ଥିତି ନୁହେଁ, ସ୍ୱୟଂ ଈଶ୍ୱରଙ୍କ ସ୍ଥିତି ମଧ୍ୟ ବିପନ୍ନ । ନିଜର ପଦବୀ ବଳରେ କ୍ଷମତାର ଅପବ୍ୟବହାର ସମ୍ପ୍ରତି ଏକ ନୀତିରେ ପରିଣତ ହୋଇଯାଇଛି । ମହାସେବକଙ୍କ ଔଦ୍ଧତ୍ୟ ଓ ଅପରାଧୀ କାର୍ଯ୍ୟକଳାପ ଯେକୌଣସି ସମାଜ ପାଇଁ ଆତ୍ମବିଶ୍ଳେଷଣର ସମୟ । ଜାତିର ପରିଚୟ କେବଳ ମାତ୍ର ଭୌଗୋଳିକ

ଭୂଖଣ୍ଡ ନୁହେଁ, ବରଂ ଜାତିର ଉଚ୍ଚାରଣ ଓ ଆଚରଣରେ ହିଁ ରହିଥାଏ । ସ୍ୱୟଂ ଠାକୁର ରାଜାଙ୍କ ଅସହାୟତା, ଈଶ୍ୱରଙ୍କର କିଂକର୍ତ୍ତବ୍ୟବିମୂଢ଼ାବସ୍ଥା, ସରକାରୀ ସ୍ତରରେ ଚଞ୍ଚକତା ବର୍ତ୍ତମାନ ସମୟର ରୁଗ୍ଣତାକୁ ହିଁ ପ୍ରକାଶ କରିଥାଏ । ପାରମ୍ପରିକ ଶଗଡ଼ ଗୁଳାରେ ଚଳିବାରେ ଅଭ୍ୟସ୍ତ ମଣିଷ କୌଣସି ବୈପ୍ଳବିକ ପରିବର୍ତ୍ତନକୁ ହଠାତ୍ ଆପଣେଇ ନେଇପାରିନଥାଏ । ଏହାସତ୍ତ୍ୱେ ସୁଲେମାନଙ୍କ ପରି କିଛି ବ୍ୟକ୍ତି ଅଛନ୍ତି, ଯେଉଁମାନେ ଅନ୍ୟାୟର ବିରୋଧାଚରଣ କରି ନିଜର ଦାବୀ ସାବ୍ୟସ୍ତ କରିବା ପାଇଁ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ସେମାନେ ଜାଣନ୍ତି ପରିବର୍ତ୍ତନ ଅବଶ୍ୟମ୍ଭାବୀ । ପ୍ରତ୍ୟେକ ମଣିଷ ପରିବର୍ତ୍ତନ ଋହେଁ, ମାତ୍ର ନିବୁଜ ପଡ଼ିଥିବା ସେମାନଙ୍କ ହୃଦୟକୁ ଖୋଲିବା ପାଇଁ ସୁଲେମାନଙ୍କ ପରି ଗୋଟିଏ ଗୋଟିଏ ଋବିକାଠି ଆବଶ୍ୟକ । ଭାଙ୍ଗି ପଡ଼ିଥିବା ଯୋଶେଫ୍ ହୃଦୟରେ ସୁଲେମାନ ସାହସ ଭରିଦେଇଛି । ସେ ମଧ୍ୟ ପ୍ରତିବାଦ କରିଛି । ଏକ ଆଶୁ ପରିବର୍ତ୍ତନ ପାଇଁ ଲଢେଇ ଋଲିଛି, ଯେଉଁଠି ଧର୍ମ, ଧର୍ମଶାସ୍ତ୍ର, ଜାତି ଓ ସମ୍ପ୍ରଦାୟ ମୁଖ୍ୟ ନୁହେଁ, ମୁଖ୍ୟ ହେଉଛି ମଣିଷର ହୃଦୟର ପରିବର୍ତ୍ତନ କାହାଣୀ । ସମୟର ଏହି ଆବଶ୍ୟକତା ଏବଂ ଆହ୍ୱାନକୁ ନାଟକର ବହୁ ସ୍ଥାନରେ ଭେଟି ହୁଏ, ଯାହା ନାଟ୍ୟକାର ସଚେତନ ଭାବରେ ଦେଖାଇଦେବାର ଚେଷ୍ଟା କରିଛନ୍ତି ।

**ଆଶ୍ରା ଖୋଜି ବୁଲୁଥିବା ଈଶ୍ୱରରେ ଇତିହାସ, ପରମ୍ପରା ଓ ସାମ୍ପ୍ରତିକତା :-** ଯେକୌଣସି ଉଚ୍ଚମାନର ସ୍ରଷ୍ଟା ସର୍ବଦା ଇତିହାସ, ପରମ୍ପରା ଓ ସାମ୍ପ୍ରତିକତା ବା ବାର୍ତ୍ତମାନିକତାକୁ ଗୁରୁତ୍ୱ ଦେଇଥା'ନ୍ତି । ଇତିହାସ କେବଳ ଇତିକଥା ନୁହେଁ, ବରଂ ତନ୍ମଧ୍ୟରେ ନିହିତ ଥାଏ ବର୍ତ୍ତମାନର ବୀଜ । ଇତିହାସର ସତର୍କ ଘଣ୍ଟି ବର୍ତ୍ତମାନକୁ କରିଥାଏ ଶୃଙ୍ଖଳିତ । ପରମ୍ପରା ଗୋଟିଏ ଜାତିର ଅସ୍ମିତା । ତା' ମାଧ୍ୟମରେ ଜାତି ନିଜର ପରିଚୟ ସୃଷ୍ଟି କରିଥାଏ । ଏହି ଇତିହାସ ସଚେତନତା ଓ ପରମ୍ପରା ପ୍ରତି ସମ୍ମାନବୋଧ ସାମ୍ପ୍ରତିକତାକୁ ଦେଇଥାଏ ବଳିଷ୍ଠ ଭିତ୍ତିଭୂମି । ପୁଣି ଏହି ତିନୋଟିର ସମନ୍ୱୟ ସାଧିତ ହୋଇ ନପାରିଲେ ଗୋଟିଏ କଳା କାଳଜୟୀ ହୋଇନଥାଏ । ସେଥିପାଇଁ ସଚେତନ ସ୍ରଷ୍ଟାଟିଏ ସର୍ବଦା ଉପରୋକ୍ତ ତିନୋଟି ବିଭାବଉପରେ ଗୁରୁତ୍ୱପ୍ରଦାନ କରିଥା'ନ୍ତି ।

ପୂର୍ବରୁ ସୂଚନା ପ୍ରସଙ୍ଗରେ କୁହାଯାଇଛି ନାଟ୍ୟକାର ନାରାୟଣ ସାହୁ ଜଣେ ସମାଜ ସଚେତନ ଶିଳ୍ପୀ । ତାଙ୍କର ପ୍ରତ୍ୟେକ ନାଟକରେ ରହିଥାଏ ସମାଜ ପାଇଁ ଚମତ୍କାର ବାର୍ତ୍ତାଟିଏ । ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର ଏହାର ବ୍ୟତିକ୍ରମ ନୁହେଁ । ଏହି ନାଟକରେ ଇତିହାସର ଯେଉଁ ଇଙ୍ଗିତ ରହିଛି, ତାକୁ ତୁଚ୍ଛା ଇତିହାସ ଅଭିଧାରେ ଚିହ୍ନିତ କରିବାକୁ ଚେଷ୍ଟାକଲେ ନାଟକର ମୂଳ ଉଦ୍ଦେଶ୍ୟ ବାଧାପ୍ରାପ୍ତ ହେବ । ଏଠାରେ ଇତିହାସ କଙ୍କାଳ ବା ସୂଚନାଟିଏ ମାତ୍ର, ଯାହା ନାଟକକୁ ଆଗକୁ ବଢ଼ିବାରେ ସହାୟତା କରିଥାଏ । ପ୍ରାସଙ୍ଗିକ ଭାବେ ସେ ଇତିହାସରୁ ଅନେକ ଘଟଣା ସାଉଁଟିଛନ୍ତି

ଏବଂ ଯେଉଁଠାରେ ତା'ର ପ୍ରାସଙ୍ଗିକତା ଅନୁଭବ କରିଛନ୍ତି, ସେଠାରେ ତା'ର ପ୍ରୟୋଗ କରିଛନ୍ତି । ଅତୀତରେ ସଂଘଟିତ ଯେଉଁ ଘଟଣା ଆମ ଚେତନାକୁ ଅଧିକ ଭାବରେ ଧକ୍କା ଦେଇଛି ତନ୍ମଧ୍ୟରେ ରହିଛି ଭୋପାଳ ଗ୍ୟାସ୍ ଦୁର୍ଘଟଣା, ଉତ୍ତରପ୍ରଦେଶ ମୁଖ୍ୟମନ୍ତ୍ରୀ କଲ୍ୟାଣ ସିଂଙ୍କ ଶାସନକାଳରେ ବାବ୍ରୀ ମସ୍‌ଜିଦ୍ ଭାଙ୍ଗିବା ପରି ଦୁଇଟି ମୁଖ୍ୟ ଘଟଣା ସହିତ ଆଉ କେତେକ ଘଟଣା ମଧ୍ୟ ଯୋଡ଼ି ହୋଇ ରହିଛି । ଯେପରି ପଞ୍ଜାବର ହିନ୍ଦୁ ମନ୍ଦିରରେ କଟାଗୋରୁ ମୁଣ୍ଡର ନିକ୍ଷେପ, ସାମ୍ପ୍ରଦାୟିକ ଦଙ୍ଗା, ବିଳାସପୁରର ରକ୍ତାକ୍ତ ସଂଘର୍ଷ, ହିନ୍ଦୁ ଓ ଶିଖ୍‌ଙ୍କ ମଧ୍ୟରେ ସଂଘର୍ଷ, କାଶ୍ମୀରରେ ସନ୍ତ୍ରାସବାଦର ଆତଙ୍କ, ଏପରିକି ମାର୍ଟିନ୍ ଲୁଥର୍, ସକ୍ରେଟିସ୍ ଓ ମହାତ୍ମାଗାନ୍ଧିଙ୍କ ନିଧନ ଘଟଣାକୁ ନାଟ୍ୟକାର ଇତିହାସରୁ ସାଉଁଟି ନାଟକର ଭାବବସ୍ତୁକୁ ବେଶ୍ ଶକ୍ତିଶାଳୀ କରିପାରିଛନ୍ତି । ପୁଣି ଅତୀତରେ ଶ୍ରୀମନ୍ଦିରରେ ଘଟାଯାଇଥିବା କିଛି ଘଟଣାକୁ ମଧ୍ୟ ନାଟ୍ୟକାର ସୂଚନାତ୍ମକ ଭାବରେ ପ୍ରକାଶ କରି ନିଜର ଇତିହାସ ଚେତନାର ପ୍ରମାଣ ଦେବା ସହିତ ବର୍ତ୍ତମାନର ଦର୍ଶକ ଓ ପାଠକଙ୍କୁ ଇତିହାସର ସେହି ହଜିଲା ଅତୀତ ପ୍ରତି ସଚେତନ କରାଇଦେବାର ପ୍ରୟାସ କରିଛନ୍ତି ।

ପରମ୍ପରା ଗୋଟିଏ ଜାତିର ମୂଳପିଣ୍ଡ । ପରମ୍ପରା ମାଧ୍ୟମରେ ହିଁ ଜାତି ନିଜର ପରିଚୟ ଖୋଜି ପାଇଥାଏ । ଏଣୁ ପ୍ରତିଟି ମଣିଷ ନିଜର ପରମ୍ପରା ପ୍ରତି ଦାୟବଦ୍ଧ । ନାଟ୍ୟକାର ସାହୁ ଆମ ପରମ୍ପରାର ସେହିପରି କିଛି ଘଟଣାକୁ ନାଟକରେ ସାମିଲ୍ କରିଛନ୍ତି । ଅବଶ୍ୟ ଯେଉଁଠି ସେ ଲକ୍ଷ୍ୟ କରିଛନ୍ତି ଆମ ପରମ୍ପରାର ନକାରାତ୍ମକ ଦିଗ, ସେଠାରେ ସେ ପ୍ରତିବାଦ କରିଛନ୍ତି ଚରିତ୍ରମାନଙ୍କ ମାଧ୍ୟମରେ । ଈଶ୍ୱର ନିବାସ ମନ୍ଦିରରେ କେଉଁ ଆବହମାନକାଳରୁ ଦେବଦାସୀ ପ୍ରଥା ଚଳିଆସୁଅଛି । ଏହା ହେଉଛି ଭାରତୀୟ ମନ୍ଦିର ପରମ୍ପରାର ଏକ ବଳିଷ୍ଠ ଦିଗ । ଦେବଦାସୀଗଣ ଈଶ୍ୱରଙ୍କ ପତି ସମ୍ପୂର୍ଣ୍ଣ ରୂପରେ ସମର୍ପିତା । ଈଶ୍ୱର ହିଁ ସେମାନଙ୍କର ପତି ଓ ଗତିମୁକ୍ତିଦାତା । 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର'ରେ ଲୀଳାମୟୀ ଚରିତ୍ରଟି ହେଉଛି ଦେବଦାସୀ । ଈଶ୍ୱରଙ୍କ ସମ୍ମୁଖରେ ନୃତ୍ୟ ପରିବେଷଣ କରିବା ଏବଂ ଈଶ୍ୱରଙ୍କୁ ନିଜର ପତି ରୂପେ ଗ୍ରହଣ କରି ଆଜୀବନ ଅବିବାହିତା ରହିବା ଦେବଦାସୀମାନଙ୍କର ଭାଗ୍ୟ । ଈଶ୍ୱର ନିବାସର କିଛି ସ୍ୱାର୍ଥପର ସେବକ ସେମାନଙ୍କ ଅସହାୟତାର ଫାଇଦା ଉଠାଇଥା'ନ୍ତି, ଯେପରି ମହାସେବକ । ଏପରି ପରମ୍ପରା ନାଟ୍ୟକାରଙ୍କ ଦ୍ୱାରା ଗ୍ରହଣୀୟ ହୋଇପାରିନାହିଁ । ମହାସେବକଙ୍କ ଈଶ୍ୱରଙ୍କୁ ଲୀଳାମୟୀ ସଂପର୍କିତ ବିଭିନ୍ନ ପ୍ରଶ୍ନ ମଧ୍ୟରେ ପରମ୍ପରା ବିରୋଧୀ ସ୍ୱର ବେଶ୍ ସ୍ପଷ୍ଟ । ପରମ୍ପରାର ସବୁଠାରୁ ବଳିଷ୍ଠ ଦିଗ ହେଉଛି 'ବିଶ୍ୱାସବୋଧ' । ଈଶ୍ୱର ବିଶ୍ୱାସ ମାଧ୍ୟମରେ ଆମେ ଆମର ପରମ୍ପରା ପ୍ରତି ସମ୍ମାନ ପ୍ରଦର୍ଶନ କରିଥାଉ । ମେରୀ ଏବଂ ଯୋଶେଫ୍‌ଙ୍କ ଶ୍ରୀକ୍ଷେତ୍ରକୁ

ଆଗମନ ଏବଂ ଈଶ୍ୱର ଦର୍ଶନ ପ୍ରତି ଅହେତୁକ ଆଗ୍ରହ, ତାଙ୍କ ପରମ୍ପରା ପ୍ରତି ସମ୍ମାନବୋଧକୁ ଇଙ୍ଗିତ କରିଥାଏ । ଭୋପାଳର ଗ୍ୟାସ୍ ଦୁର୍ଘଟଣାରେ ମେରୀ ହରାଇଥିଲା ମାତା ହେବାର ସୌଭାଗ୍ୟ । ସେଥିପାଇଁ ସେ ନିଜ ସ୍ୱାମୀ ଯୋଶେଫ୍ ସହିତ ଧାଇଁଆସିଲେ ଈଶ୍ୱରକ୍ଷେତ୍ର । ଠାକୁରଙ୍କ ଦର୍ଶନରେ ହୁଏତ ସେ ମାତୃତ୍ୱ ଫେରିପାଇପାରେ, ପରମ୍ପରାର ଏହି ବିଶ୍ୱାସବୋଧକୁ ନେଇ ସେ ସୁଦୂର ଭୋପାଳରୁ ଧାଇଁଆସିଥିଲା । ସେ ଖ୍ରୀଷ୍ଟିଆନ୍,ମାତ୍ର ଜଗତର ନାଥ ଈଶ୍ୱରଙ୍କ ନିକଟରେ କୌଣସି ଜାତି ନାହିଁ ଏହି ବିଶ୍ୱାସ ହିଁ ତାକୁ ଈଶ୍ୱରଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରାଇବାକୁ ବାଧ କରିଛି । ନାରୀ ସନ୍ତାନବତୀ ନହେଲେ ଆମ ସମାଜରେ ତା'ର ମର୍ଯ୍ୟାଦାହାନି ଘଟିଥାଏ । ଏହି ପରମ୍ପରାର ଚିନ୍ତାଧାରା ଅଧିକ ବିବ୍ରତ କରିଛି ମେରୀକୁ । ନାଟ୍ୟକାର ଭାରତୀୟ ପରମ୍ପରାର ଏହିପରି ବିଭିନ୍ନ ଘଟଣାକୁ ରୂପ ପ୍ରଦାନ କରି ପରମ୍ପରା ପ୍ରତି ତାଙ୍କର ରହିଥିବା ଶ୍ରଦ୍ଧାକୁ ପରୋକ୍ଷରେ ପ୍ରକାଶ କରିଛନ୍ତି ।

ନାଟକ ଏକ ମିଶ୍ରକଳା । ତେଣୁ ଏହାର ଉଦ୍ଦେଶ୍ୟ ମଧ୍ୟ ବିବିଧ । ଏହି ବିବିଧ ଉଦ୍ଦେଶ୍ୟ ମଧ୍ୟରୁ ଏକ ଗୁରୁତ୍ୱପୂର୍ଣ୍ଣ ଉଦ୍ଦେଶ୍ୟ ହେଉଛି ଦର୍ଶକ ବା ପାଠକଙ୍କୁ ସାମ୍ପ୍ରତିକ ସମାଜରେ ଘଟିଯାଉଥିବା ଘଟଣାମାନଙ୍କ ସଂପର୍କରେ ସଚେତନ କରାଇଦେବା । ତେଣୁ ସାମ୍ପ୍ରତିକ କାଳରେ ଆମ ସମାଜ ଜୀବନରେ ଯାହା ସବୁ ଘଟିଚାଲିଥାଏ, ତାର ଏକ ସୂଚନାତ୍ମକ ଅଭିବ୍ୟକ୍ତି ନାଟକରେ ପରିଲକ୍ଷିତ ହୋଇଥାଏ । ସାହିତ୍ୟର ବିଭିନ୍ନ ବିଭାବ ତୁଳନାରେ ନାଟକ ଅଧିକ ଆକର୍ଷଣୀୟ ହୋଇଥାଏ ତାର ସାମାଜିକ ପ୍ରତିବଦ୍ଧତା ପାଇଁ । ନାଟ୍ୟକାର ନାରାୟଣ ସାହୁଙ୍କ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଅନେକ ସାମ୍ପ୍ରତିକ ଘଟଣାବଳୀ ସ୍ଥାନ ପାଇଛି ନାଟ୍ୟକାରଙ୍କ ସାମାଜିକ ପ୍ରତିବଦ୍ଧତା ଯୋଗୁଁ । ଈଶ୍ୱର ନିବାସରେ କ'ଣ ସବୁ ଘଟେ, ତା'ର ହିସାବ କାହା ନିକଟରେ ନଥାଏ । ଅନେକ କଥା ରହିଯାଏ ପରଦାର ଅନ୍ତରାଳରେ । ନିରୀହା ମେରୀ ପ୍ରତି ଯୌନ ଆକ୍ରମଣ ଏବଂ ପୁରୀ ବେଳାଭୂମିରେ ତାର କ୍ଷତବିକ୍ଷତ ଶବ ଆମ ସାମ୍ପ୍ରତିକ ସମାଜର କଦର୍ଯ୍ୟ ମନୋବୃତ୍ତିକୁ ପ୍ରକାଶ କରିଥାଏ । ନିକଟରେ ପୁରୀ ରଥଯାତ୍ରା ସମୟରେ ଯେଉଁ ଅଘଟଣ ଘଟିଗଲା, ସେଥିପାଇଁ ପୁରୀର ଶଙ୍କରାଚାର୍ଯ୍ୟ, ଠାକୁର ରାଜା ଏପରିକି ମାନ୍ୟବର ଉଚ୍ଚନ୍ୟାୟାଳୟ ବାଧ ହୋଇ ସେସମ୍ପର୍କରେ ମତ ପ୍ରଦାନ କରିଥିଲେ । ଏହାସତ୍ତ୍ୱେ କିଛି ସେବକ ନିଜର ସଂପର୍କୀୟଙ୍କୁ ରଥ ଉପରକୁ ଚଢାଇବା, ପ୍ରଶାସନକୁ ଆହ୍ୱାନ ଦେବା ନିଶ୍ଚିତ ଭାବରେ ପରିତାପର ବିଷୟ । ଏମିତି ଅନେକ ଘଟଣାରୁ ଧର୍ମ ପ୍ରତି ରହିଥିବା ଆମର ଦୃଷ୍ଟିଭଙ୍ଗୀ ସଂପର୍କରେ ଗୋଟିଏ ଦୁଇଟି ଉଦାହରଣ ଦେଇ ନାଟ୍ୟକାର ନିଜ ସାମାଜିକ ପ୍ରତିବଦ୍ଧତାର ପ୍ରମାଣ ଦେଇଛନ୍ତି । ଜଗତରନାଥ ଶ୍ରୀଜଗନ୍ନାଥ । ତାଙ୍କ ପାଇଁ ସମଗ୍ର ବିଶ୍ୱ ସମାନ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ

ତାଙ୍କର ସ୍ଥାନ ଆହୁରି ଊର୍ଦ୍ଧ୍ୱରେ । ଅଥଚ ଭକ୍ତ ମନ୍ଦିର ଭିତରେ ତାଙ୍କର ଦର୍ଶନ କରିପାରେ ନାହିଁ, ଆବଶ୍ୟକ ମନେ କଲେ ମହାସେବକମାନେ ଭକ୍ତ ଦର୍ଶକମାନଙ୍କୁ ଅପମାନିତ କରିଥା'ନ୍ତି । ଆମ ସମୟର ଅନ୍ୟତମ ବଳିଷ୍ଠ କଥା ସାମ୍ରାଜ୍ଞୀ ପଦ୍ମଶ୍ରୀ ଡକ୍ଟର ପ୍ରତିଭା ରାୟ ତାଙ୍କ ବାନ୍ଧବୀ ସହିତ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମିତ୍ତ ଯାଇଥିବା ସମୟରେ ଯେଉଁପରି ଅପ୍ରୀତିକର ଓ ଅସମ୍ମାନିତ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ, ତାହା ସେ ପ୍ରକାଶ କରିଛନ୍ତି ତାଙ୍କର 'ଧର୍ମର ରଙ୍ଗ କଳା' ପ୍ରବନ୍ଧରେ । ଏଥିରେ ମହାସେବକମାନଙ୍କୁ ସେ ତୀବ୍ର ବ୍ୟଙ୍ଗୋକ୍ତି କରିଛନ୍ତି । କେବଳ ସେତିକି ନୁହେଁ ମେରୀ ପରି ସରଳା ନାରୀମାନଙ୍କୁ ଯୌନଶୋଷଣ କରି ତାଙ୍କୁ ନିଧନ କରୁଥିବା ଏହି ସେବକମାନେ ନିଜକୁ ଠାକୁରଙ୍କ ଅତ୍ୟନ୍ତ ଆପଣାର ବୋଲି ଘୋଷଣା କରିଥା'ନ୍ତି । କେତେକ କ୍ଷେତ୍ରରେ ଠାକୁରଙ୍କ ସେବାକାର୍ଯ୍ୟ ବନ୍ଦ କରିବାର ଧମକ ଦେଇଥା'ନ୍ତି ଓ ବିଭିନ୍ନ ନିଯୋଗର ନିର୍ଘଣ୍ଟରେ ପରିବର୍ତ୍ତନ କରି ସେମାନଙ୍କର ଅହଂ ତଥା ପାରିବାପଣିଆକୁ ସାବ୍ୟସ୍ତ କରିଥା'ନ୍ତି । ଏହି ନାଟକରେ ମହାସେବକଙ୍କ ବକ୍ତବ୍ୟରୁ ତା' ଔଦ୍ଧତ୍ୟ ବେଶ୍ ବାରି ହୋଇପଡ଼େ । ଈଶ୍ୱରଙ୍କୁ ସେ କୁହେ –'ଥାଉ, ସେ ଫମ୍ପା ଆଦର୍ଶ କଥା ମତେ ଆଉ ଶୁଣାଅନି । ତମେ ଅତୀତରେ କେବେ ଅବତାରୀ ଥିଲ, ସେ କଥା ତମେ ଜାଣ । ହେଲେ ଏ ଆଧୁନିକ ଯୁଗରେ ତମର ସେ ଅବତାର ଆଉ କୌଣସି କାମକରିବ ନାହିଁ । ଆଜିର ମଣିଷ ପାଇଁ ତମେ ହିଁ ପ୍ରଥମ ମୂଲ୍ୟହୀନ ପଦାର୍ଥ ।' ମନ୍ଦିର ପ୍ରଶାସକ ଏପରିକି ଜିଲ୍ଲାପାଳଙ୍କୁ ଯେବେ ଏହି ସେବକମାନେ ଧମକ ଦେଇପାରନ୍ତି, ସାଧାରଣ ମଣିଷଙ୍କ ପ୍ରତି ସେମାନଙ୍କର ବ୍ୟବହାର କିପରି ହୋଇଥିବ ତାହା ଅନୁମାନଯୋଗ୍ୟ ନିଶ୍ଚୟ । ଯୋଶେଫ୍ ପ୍ରତି ମହାସେବକର କୁତ୍ସିତ ବାକ୍ୟବାଣରୁ ଏହାର ପ୍ରମାଣ ମିଳିଥାଏ । ଏହି ସେବକମାନେ ଯେକୌଣସି ସମୟରେ ମିଥ୍ୟାର ଜାଲରେ ଅନ୍ୟମାନଙ୍କୁ ବନ୍ଦୀ କରିପାରନ୍ତି । ମେରୀର ମୃତ୍ୟୁକୁ ଈଶ୍ୱରଙ୍କ ମୁଣ୍ଡରେ ଗୁଡ଼େଇ ଦେଇପାରନ୍ତି ଓ ଈଶ୍ୱରଙ୍କୁ ଚରିତ୍ରହୀନ ବୋଲି ଅକ୍ଳେଶରେ ପ୍ରମାଣ କରିଦିଅନ୍ତି ଏବଂ ଧମକ ଦେଇ କହିପାରନ୍ତି, 'ମନେରଖ ଈଶ୍ୱର, ମୁଁ ଚାହିଁଲେ ସବୁଦିନ ପାଇଁ ଈଶ୍ୱର ନିବାସ ତମଲାଗି ନିଷିଦ୍ଧ ହୋଇଯିବ ।' କେବଳ ଈଶ୍ୱରଙ୍କ କ୍ଷେତ୍ରରେ ଘଟୁଥିବା ଘଟଣା ନୁହେଁ, ନିକଟ ଅତୀତରେ ବରଗଡ଼ ଉମା ମାହେଶ୍ୱରୀ ମନ୍ଦିର, ଭଦ୍ରକର ଦୁଲାଦେଈ ମନ୍ଦିର, ଲିଙ୍ଗରାଜ ମନ୍ଦିର, ବିରଜା ମନ୍ଦିର, ବନଜାଗ ଯାତ୍ରା ଆଦି କ୍ଷେତ୍ରରେ ଯାହାସବୁ ଘଟିଯାଇଛି, ତାକୁ ମଧ୍ୟ ନାଟ୍ୟକାର ନିଜ ନାଟକରେ ସ୍ଥାନ ଦେଇ ସାମ୍ପ୍ରତିକ ଘଟଣାବଳୀର ବହୁ ଦୃଶ୍ୟକୁ ରୋଚକ ଢଙ୍ଗରେ ପରିବେଷଣ କରିଛନ୍ତି । ଏହି ଦୃଷ୍ଟିରୁ ନାଟକଟିରେ ଇତିହାସ, ପରମ୍ପରା ଓ ସାମ୍ପ୍ରତିକତାର ମଧୁର ସମନ୍ୱୟ ସଂଘଟିତ ହୋଇଛି ବୋଲି ସ୍ୱୀକାର କରିବାକୁ ହେବ ।

**ସାମାଜିକ ଚେତନା :-** ପ୍ରତ୍ୟେକ ସ୍ରଷ୍ଟା ସମାଜର ଏକ ଏକ ସଚେତନ ବିନ୍ଦୁ । ସେ ବଞ୍ଚିଥିବା ସମାଜରେ ବିଭିନ୍ନ ସମୟରେ ଘଟିଯାଉଥିବା ଘଟଣାଗୁଡ଼ିକର ପ୍ରତ୍ୟକ୍ଷଦ୍ରଷ୍ଟା ଭାବରେ ଯାହା ଅନୁଭବ କରିଥାଏ, ତାହାକୁ ସେ ଶୈଳ୍ପିକ ମୂଲ୍ୟ ପ୍ରଦାନ କରିଥାଏ ତା'ସୃଷ୍ଟିରେ । ସାଂପ୍ରତିକ ସମୟରେ ପ୍ରତ୍ୟେକ ଦିନ କିଛି ନା କିଛି ଘଟଣା ଘଟିଚାଲିଛି, ଯାହା ସ୍ରଷ୍ଟା ମନରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରୁଛି । ଏପରି ଘଟଣାଗୁଡ଼ିକୁ ଜଣେ ସଚେତନ ସମାଜ ପ୍ରତିବଦ୍ଧ ସ୍ରଷ୍ଟା ଆଖି ବୁଜିଦେବା ସମ୍ଭବ ନୁହେଁ । "ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର" ନାଟକରେ ନାଟ୍ୟକାର ନାରାୟଣ ସାହୁ ଆମ ସମାଜରେ ଘଟିଥିବା ଏବଂ ଘଟିଚାଲୁଥିବା ଅନେକ ଘଟଣାକୁ ବେଶ୍ ଚମତ୍କାର ଢଙ୍ଗରେ ରୂପପ୍ରଦାନ କରିଛନ୍ତି । ଅବଶ୍ୟ ସ୍ରଷ୍ଟା ପ୍ରତ୍ୟକ୍ଷଭାବରେ ତା'ସୃଷ୍ଟିରେ ଆତ୍ମପ୍ରକାଶ କରି ନ ଥାଏ । ପରୋକ୍ଷରେ ନାଟ୍ୟବର୍ଣ୍ଣିତ ଚରିତ୍ରମାନଙ୍କ ମାଧ୍ୟମରେ ସେ ନିଜର ଉଦ୍ଦେଶ୍ୟ ବ୍ୟକ୍ତ କରିଥାଏ ଏବଂ ସେଥିରୁ ଜଣେ ସ୍ରଷ୍ଟାର ସାମାଜିକ ଚେତନା ପ୍ରମାଣିତ ହୋଇଥାଏ ।

ଭାରତର ସମ୍ବିଧାନ ଭାରତକୁ ଏକ ଗଣତାନ୍ତ୍ରିକ ରାଷ୍ଟ୍ରର ସ୍ୱୀକୃତି ଦେଇଛି । ପୁଣି ଭାରତୀୟ ସମ୍ବିଧାନ ଭାରତକୁ ଏକ ଧର୍ମନିରପେକ୍ଷ ରାଷ୍ଟ୍ରରୂପେ ଘୋଷଣା କରିଛି । ଭାରତର ନାଗରିକ ରୂପେ ସମସ୍ତେ ସମ୍ବିଧାନର ଘୋଷଣାକୁ ସ୍ୱୀକାର କରିବା ଉଚିତ୍ । ଅଥଚ ଆମ ଦେଶରେ ଧର୍ମକୁ ନେଇ ରକ୍ତପାତ ଓ ସାଂପ୍ରଦାୟିକ ଦଙ୍ଗା ହୁଏ । ମନ୍ଦିର, ମସ୍‌ଜିଦ୍ ଓ ଗୀର୍ଜାକୁ ନେଇ ମଣିଷ ବିଭିନ୍ନ ଦଳରେ ବିଭାଜିତ ହୋଇ ପରସ୍ପର ପ୍ରତି ଆକ୍ରମଣ କରନ୍ତି । ଭାରତୀୟଙ୍କ ମଧ୍ୟରେ ଯେତିକି ଧାର୍ମିକ ଉଦାରତା ପରିଲକ୍ଷିତ ହେବା କଥା, ତାହା ହୁଏ ନାହିଁ । ଏହାଦ୍ୱାରା ଅନ୍ତର୍ଜାତୀୟ ସ୍ତରରେ ଭାରତର ଭାବମୂର୍ତ୍ତି କ୍ଷୁର୍ଣ୍ଣ ହୋଇଥାଏ । ରାମମନ୍ଦିର ଓ ବାବ୍ରୀ ମସ୍‌ଜିଦ୍‌କୁ ନେଇ ଯେଉଁ ଦୁଃଖଦ ଘଟଣା ଘଟିଗଲା, ତାହା ଆଦୌ ଆଶା କରା ଯାଉ ନ ଥିଲା । ମଧ୍ୟପ୍ରଦେଶ ବିଳାସପୁର ଜିଲ୍ଲାର ପଣ୍ଡାତରାଇ ଗ୍ରାମରେ ଏକ ମନ୍ଦିରରେ ହରିଜନଙ୍କ ପ୍ରବେଶକୁ ନେଇ ଦଙ୍ଗା, ଦିଲ୍ଲୀ ଗୁରୁଦ୍ୱାରର ଦୁଃଖଦ ଘଟଣା, ପଞ୍ଜାବ ଜଗନ୍ନାଥ ମନ୍ଦିରର ଗୋରୁମୁଣ୍ଡ ଫିଙ୍ଗା; ବରଗଡ଼, ଭଦ୍ରକ ତଥା ବିରଜା ମନ୍ଦିରରୁ ଦେବାଦେବୀଙ୍କ ଅଳଂକାର ଚୋରି ଘଟଣା ଆମ ସାମାଜିକ ଜୀବନର ନକାରାତ୍ମକ ଦିଗକୁ ସୂଚିତ କରିଥାଏ । ଜଣେ ସମାଜ-ସଚେତନ ସ୍ରଷ୍ଟାଭାବରେ ନାଟ୍ୟକାର ଏହି ଘଟଣାଗୁଡ଼ିକ ପ୍ରତି ଆଖିବୁଜି ଦେଇନାହାନ୍ତି । 'ସମୟ' ମୁଖରେ ଈଶ୍ୱରଙ୍କ ନିକଟରେ ଏହାର ପ୍ରତିବାଦ କରାଯାଇଛି । ପରୋକ୍ଷରେ ଈଶ୍ୱରଙ୍କୁ ଦୋଷୀ ସାବ୍ୟସ୍ତ କରି ସମୟ କହିଛି - "ସବୁଯୁଗରେ ସଂକୀର୍ଣ୍ଣ ଜାତିପ୍ରଥାକୁ ତମେ ପ୍ରୋତ୍ସାହନ ଯୋଗାଇ ଆସିଛ । ତମରିପାଇଁ ସେଦିନ କଳାପାହାଡ଼ ସୃଷ୍ଟି କରିଥିଲା ଶ୍ରୀମନ୍ଦିରରେ ଧ୍ୱଂସର ଲୀଳା । ତମରିପାଇଁ ବାବରୀ ମସ୍‌ଜିଦ୍‌ରେ ହିନ୍ଦୁମାନଙ୍କ ଦୌରାତ୍ମ୍ୟ ବୃଦ୍ଧି ପାଇଥିଲା । ତମରିପାଇଁ ଦିଲ୍ଲୀର ଗୁରୁଦ୍ୱାର ଭିତରୁ ଛୁଟିଥିଲା ରକ୍ତର ଧାର ।"

ଘଟିଯାଇଥିବା ଏହି ଅପ୍ରୀତିକର ଘଟଣା ସମ୍ପର୍କରେ ଏହି ପ୍ରତିବାଦ କେବଳ ନାଟ୍ୟକାରଙ୍କର ନୁହେଁ, ସବୁ ଉଦାରବାଦୀ ମଣିଷର ପ୍ରତିବାଦ, ଯେଉଁମାନେ ଧର୍ମ, ଜାତି ଓ ବର୍ଣ୍ଣ ଉପରେ ସର୍ବଦା ମଣିଷକୁ ହିଁ ଗୁରୁତ୍ୱ ଦେଇଥାନ୍ତି ।

ଆତ୍ମଭୋଳା ମଣିଷର ଭାବପ୍ରବଣତାକୁ ଯୁଗେଯୁଗେ କିଛି ଧୂର୍ତ୍ତ ଠକି ଚାଲିଥାନ୍ତି । କାରଣ ସରଳ ମଣିଷ ସେମାନଙ୍କର ଶଠତା ଓ ଆତ୍ମସ୍ୱାର୍ଥକୁ ବୁଝିପାରି ନ ଥାଏ । ନାଟ୍ୟକାରଙ୍କ ବିଶ୍ୱାସ ଦିନେନାଦିନେ ମଣିଷ ସଚେତନ ହେବ ଏବଂ ଧର୍ମ ଓ ଈଶ୍ୱରଙ୍କ ନାମରେ ଯେଉଁ ବ୍ୟବସାୟ ତଥା କଳଙ୍କିତ ଘଟଣାମାନ ଘଟିଚାଲିଛି, ତାର ବିଲୋପ ହେବ । ସେଥିପାଇଁ ସମୟ ଈଶ୍ୱରଙ୍କୁ କହିଛି – "ମଣିଷ ଆଜି ଆତ୍ମସଚେତନ ହେବାକୁ ଯାଉଛି । ଯେଉଁଦିନ ସେ ପୂର୍ଣ୍ଣ ସଚେତନ ହୋଇଯିବ, ସେଦିନ ଈଶ୍ୱର ନାମ ପୃଥିବୀରୁ ଲିଭିଯିବ । ତମେ ଆଉ ତାକୁ ତମ ଯାଦୁରେ ବଶ କରିପାରିବନି ।"

ଭୋପାଳର ଗ୍ୟାସ ଦୁର୍ଘଟଣା ସ୍ୱାର୍ଥପର ମଣିଷର ଇତିହାସରେ ଏକ କଳଙ୍କିତ ଘଟଣା । ଅଥଚ ଏହି ଦୁର୍ଘଟଣାକୁ ନେଇ କମ୍ ରାଜନୀତି ହୋଇନାହିଁ ଭାରତରେ । ଏପରିକି ତଥାକଥିତ କ୍ଷମତାଶାଳୀ ରାଜନୀତି ପଣ୍ଡାମାନେ ମୁଖ୍ୟ ଖଳାନାୟକକୁ ବଡ଼ ଚତୁରତାର ସହିତ ଭାରତରୁ ତାଙ୍କ ଦେଶକୁ ପଠାଇ ଦେବାରେ ସମର୍ଥ ହୋଇଥିଲେ । ଗ୍ୟାସ୍ ଦୁର୍ଘଟଣାରେ ଅନେକ ଶିଶୁ, ଯୁବକ-ଯୁବତୀ, ବୃଦ୍ଧ-ବୃଦ୍ଧା ଅକାଳରେ ପ୍ରାଣ ହରାଇଥିଲେ । କ୍ଷତି ତୁଳନାରେ କ୍ଷତିପୂରଣ ଥିଲା ସମୁଦ୍ରକୁ ଶଙ୍ଖେ ମାତ୍ର । ପ୍ରସଙ୍ଗକ୍ରମେ ନାଟ୍ୟକାର ସେହି ଘଟଣାଟିକୁ ସ୍ଥାନ ଦେଇଛନ୍ତି ତାଙ୍କ ନାଟକରେ । ମେରୀ ଏବଂ ଯୋଶେଫ ସେହି ଭୋପାଳ ଦୁର୍ଘଟଣାର ପ୍ରତ୍ୟକ୍ଷ ସାକ୍ଷୀ । ଯୋଶେଫ୍ ହରାଇଥିଲା ଆଖି, ମେରୀ ହରାଇଥିଲା ମାତୃତ୍ୱ ଏବଂ ଉଭୟ ହରାଇଥିଲେ ଏକମାତ୍ର ସନ୍ତାନ ଲୁରାକୁ । ସେହିପରି ଅନ୍ୟମାନେ ମଧ୍ୟ ସେମାନଙ୍କର ବହୁ ମୂଲ୍ୟବାନ ପଦାର୍ଥ ହରାଇ ନିଃସ୍ୱ ହୋଇଯାଇଥିଲେ । ଅନେକ ବିକଳାଙ୍ଗ ଶରୀର ନେଇ ଯନ୍ତ୍ରଣାରେ ଛଟପଟ ହେଉଥିଲେ । ସରକାରୀ କ୍ଷତିପୂରଣ ଥିଲା ଧର୍ମକୁ ଆଖି ଠାର ମାତ୍ର । ମେରୀ ଯୋଶେଫଙ୍କୁ କ୍ଷତିପୂରଣ ସମ୍ପର୍କରେ ପଚାରିବା ସମୟରେ ଯୋଶେଫ୍ କହିଛି "ଯଦି ଲର୍ଡ୍ ଜେସସ୍ ନିଜେ ପୃଥିବୀକୁ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି, ତେବେ ବି ଭୋପାଳ ଗ୍ୟାସ୍ ଦୁର୍ଘଟଣାରେ କ୍ଷତିଗ୍ରସ୍ତ ଲୋକଙ୍କର ଦୁର୍ଦ୍ଦଶା ଦୂର ହୋଇପାରିବ ନାହିଁ । × × ×ସରକାର ଯେତିକି କ୍ଷତିପୂରଣ ଦେବାକୁ ଘୋଷଣା କରିଛନ୍ତି, ସେତକ ସମୁଦ୍ରକୁ ଶଙ୍ଖେ ପାଣି ।" ଭୋପାଳ ଗ୍ୟାସ୍ ଦୁର୍ଘଟଣା ଗୋଟିଏ ନଜମା, ଫତିମା ବା ମେରୀ ନୁହେଁ; କିମ୍ବା ଯୋଶେଫ୍, ରହମତ୍ ମିଆଁ, ଗୁରୁବଚନ ସିଂହ ନୁହେଁ; ହଜାର ହଜାର ନଜମା, ମେରୀ, ଯୋଶେଫ୍ ଆଦିଙ୍କ ସ୍ୱପ୍ନକୁ ଭାଙ୍ଗି ଟୁକୁଡ଼ା ଟୁକୁଡ଼ା କରିଦେଇଛି । ସେମାନଙ୍କ ଜୀବନର ସମ୍ଭାବନା ଚାଲିଯାଇଛି

ଅପହଞ୍ଚ ଦୂରତ୍ୱ ନାଟ୍ୟକାର ବଡ଼ ଚମତ୍କାର ଢ଼ଙ୍ଗରେ ଏହି ବାସ୍ତବ ଘଟଣାଟିକୁ କଳାତ୍ମକ ରୂପ ଦେଇ ନିଜର ସାମାଜିକ ଦାୟିତ୍ୱବୋଧର ପ୍ରମାଣ ଦେଇଛନ୍ତି ।

ଭାରତର ରାଜନୀତିରେ ଅପରାଧୀକରଣ ସଂପ୍ରତି ସବୁଠାରୁ ବଡ଼ ସମସ୍ୟା ହୋଇ ଦେଖାଦେଇଛି । କ୍ଷମତାଶାଳୀ, ଆର୍ଥିକ ସ୍ୱଚ୍ଛଳ ବହୁ ଗୁଣ୍ଡା-ଅପରାଧୀ ରାଜନୀତିରେ ସେମାନଙ୍କର କାୟା ବିସ୍ତାର କରି ଚାଲିଛନ୍ତି । ଜନସାଧାରଣଙ୍କ ମିଥ୍ୟା ଭାଷଣ ଓ ଆକାଶର ସ୍ୱପ୍ନ ବାଣ୍ଟି ବାରମ୍ବାର ଠକେଇ ଚାଲିଛନ୍ତି । ସୁଲେମାନ ଓ ମହାସେବକଙ୍କ ଭୋଟ ପ୍ରଚାରକୁ ଲକ୍ଷ୍ୟ କଲେ ଆମ ରାଜନୀତି କେଉଁସ୍ତରକୁ ଗତିକରୁଛି, ତାହା ସ୍ପଷ୍ଟ ହୋଇପାରିବ । ପରସ୍ପର ପ୍ରତି ଦୋଷାରୋପ ତଥା ନିଜର ପାରିବା ପଣିଆର ପ୍ରଚାର ମାଧ୍ୟମରେ ଆଜିର ରାଜନୀତିକ ନେତାମାନେ ଭୋଟ ମାଗନ୍ତି ଏବଂ ଭୋଟ ପରେ କ୍ଷମତାର ରାଜସିଂହାସନ ଉପରେ ବସିବାପରେ ସେମାନେ ଭୁଲିଯାଇଥାନ୍ତି ନିଜର ପ୍ରତିଶ୍ରୁତି । ନାଟ୍ୟକାର ଏହି ନାଟକରେ ବର୍ତ୍ତମାନ ରାଜନୀତିର ପ୍ରକୃତ ସ୍ୱରୂପ ଉନ୍ମୋଚନ କରିବାକୁ ଚେଷ୍ଟା କରିଛନ୍ତି, ଯାହା ତାଙ୍କ ସାମାଜିକ ସଚେତନତାର ବଳିଷ୍ଠ ଉଦାହରଣ ।

ନାଟକରେ ନାଟ୍ୟକାର ବର୍ତ୍ତମାନ ସମୟର ଅନ୍ୟଏକ ବିଶିଷ୍ଟ ଘଟଣାକୁ ପ୍ରତୀକାତ୍ମକ ଭାବରେ ସୂଚାଇ ଦେଇଛନ୍ତି । ଆଜି ଆଉ ମନ୍ଦିର ଧର୍ମପୀଠ ହୋଇ ରହିନାହିଁ, ସେଠାରେ ଅନେକ ଅଶାଳୀନ ଘଟଣା ମଧ୍ୟ ଚାଲିଥାଏ । ଧର୍ମ ନାମରେ ଅଧର୍ମର, ପୁଣ୍ୟ ନାମରେ ପାପର ରାଜତ୍ୱ ଚାଲିଥାଏ । ଈଶ୍ୱରଙ୍କ ସେବକମାନେ ମନ୍ଦିରର ପବିତ୍ର ସ୍ଥଳୀକୁ ନିଜ ଯୌନଲାଳସାରେ ଅପବିତ୍ର କରିଥାନ୍ତି । ନିଜକୁ ଧାର୍ମିକ ସନ୍ଥ ଭାବରେ ପ୍ରଚାର କରୁଥିବା ବ୍ୟକ୍ତି ବାସ୍ତବରେ କେତେ ପରିମାଣରେ କୁତ୍ସିତ ଚରିତ୍ରଧାରୀ ତାହା ବିଭିନ୍ନ ଗଣମାଧ୍ୟମ ପ୍ରମାଣ କରିସାରିଛି । ଆଶାରାମ ବାପୁଙ୍କଠାରୁ ଆରମ୍ଭ କରି ଓଡ଼ିଶାର ସାରଥି ପର୍ଯ୍ୟନ୍ତ ସମସ୍ତ ଭଣ୍ଡାମିର ମୁଖା ଖୋଲିଯାଇଛି । ସେମାନେ ଆଧ୍ୟାତ୍ମିକ ଗୁରୁନୁହନ୍ତି; ବରଂ ବିଳାସ-ବ୍ୟସନରେ ଜୀବନ ବଞ୍ଚାଉଥିବା ଜଣେ ଜଣେ ରସିକ ପୁରୁଷ । ସାଧୁସନ୍ଥମାନଙ୍କର ଅପକ୍ରିୟା ଆଜି ଭାରତୀୟ ଆଧ୍ୟାତ୍ମିକ ଭାବନା ଉପରେ ପ୍ରଶ୍ନବାଚୀ ଠିଆ କରାଇଛି । ଆଜିର ଏହି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗଟିକୁ ନାଟ୍ୟକାର ଅଣଦେଖା କରିପାରିନାହାନ୍ତି । ମହାସେବକ ଚରିତ୍ର ମାଧ୍ୟମରେ ସେ ଆଜିର ଧର୍ମଗୁରୁ ବା ସନ୍ଥମାନଙ୍କର ପ୍ରକୃତ ସ୍ୱରୂପ ଉନ୍ମୋଚନ କରିବାକୁ ଚେଷ୍ଟା କରିଛନ୍ତି । ମହାସେବକଙ୍କର ଦେବଦାସୀ ଲୀଳାମୟୀଙ୍କ ସହିତ ସମ୍ପର୍କ ଏବଂ ଲଜ୍ଜାହୀନ ଭାବରେ ମେରୀକୁ ଧର୍ଷଣ ପରେ ହତ୍ୟା କରି ନିଜ ଦୋଷକୁ ଈଶ୍ୱରଙ୍କ ଉପରେ ଲଦିଦେବା ମଧ୍ୟରେ ମହାସେବକ ଚରିତ୍ରର ଭିନ୍ନ ଏକ ଦିଗ ପ୍ରମାଣିତ ହୋଇଥାଏ । ଲୀଳାମୟୀ ପ୍ରତି ମହାସେବକଙ୍କ ମନରେ କି

ପ୍ରକାର ଦୁର୍ବଳତା ଥିଲା, ତାହା ଉଭୟଙ୍କ ସଂଳାପରୁ ବାରିହୋଇ ପଡ଼ିଥାଏ । ମହାସେବକ ଭାଷାରେ- "ମତେ ବିଶ୍ୱାସ କର ଲୀଳା । କେବଳ ତମରିପାଇଁ ରାତିର ଅନ୍ଧାର ନ ମାନି ଏଠାକୁ ଛୁଟିଆସେ । ଈଶ୍ୱରଙ୍କ ନିବାସର ନୀତିନିୟମ ମୋ ପଥରେ କଣ୍ଟାହୋଇ ଦେଖାଦେଇଛି । ଖାଲି ରାତିର ଅନ୍ଧାର ଯାହା ମୋପାଇଁ ପଥ ପରିଷ୍କାର କରିଦେଇଛି ।"

ମନ୍ଦିରର ସେବକମାନେ ମନ୍ଦିରକୁ କିପରି ବ୍ୟକ୍ତିଗତ ସମ୍ପତ୍ତି ରୂପେ ବ୍ୟବହାର କରି ନିଜର ଫାଇଦା ଉଠାଇଥାନ୍ତି, ତାହା ନିକଟରେ ରଥଯାତ୍ରା ସମୟରେ ଦେଖିବାକୁ ମିଳିଥିଲା । ଏପରିକି ଜିଲ୍ଲାପାଳକୁ ମଧ୍ୟ ଧମକ ଦେବାକୁ ସେମାନେ ସାହସ କରିପାରନ୍ତି । ମହାସେବକ ହେଉଛି ସେହିପରି ଏକ ଚରିତ୍ର, ଯିଏ ଈଶ୍ୱରଙ୍କୁ ମଧ୍ୟ ଧମକ ଦେଇପାରେ । ମନ୍ଦିରରୁ ତାଙ୍କୁ ସବୁଦିନପାଇଁ ବିତାଡ଼ିତ କରିଦେବାର ଆସ୍ପର୍ଦ୍ଧା କରିପାରେ । ମେରୀ ପ୍ରତି ବ୍ୟଭିଚାର ଓ ହତ୍ୟା ଏବଂ ଦେବଦାସୀ ଲୀଳାମୟୀ ସହିତ ସମ୍ପର୍କ ସମ୍ବନ୍ଧରେ ଈଶ୍ୱରଙ୍କ ପ୍ରଶ୍ନର ଉତ୍ତର ଦେଇ ମହାସେବକ କହିଛି- "ସେ ପ୍ରଶ୍ନ ପଚାରିବାକୁ ଅଧିକାର ତମକୁ ଦେଲା କିଏ ? ଈଶ୍ୱର ନିବାସର ପ୍ରତିଟି କର୍ମ ମୋଦ୍ୱାରା ନିୟନ୍ତ୍ରିତ । ମୁଁ ଈଶ୍ୱରଙ୍କ ପ୍ରତିନିଧି । ମୋର ପ୍ରତ୍ୟେକଟି ଆକାଙ୍କ୍ଷାହିଁ ଈଶ୍ୱର ନିବାସର ଅଲିଖିତ ସମ୍ବିଧାନ ।"

ରାଜତନ୍ତ୍ରର ବିଲୋପ ପରେ ରାଜାମାନେ କେବଳ ସେମାନଙ୍କ କ୍ଷମତା ହରାଇ ନ ଥିଲେ; ବରଂ ସରକାରଙ୍କ ଦୟାର ପାତ୍ର ହୋଇ ବଞ୍ଚିଲେ ଯାହା ତାଙ୍କ ଆତ୍ମମର୍ଯ୍ୟାଦା ଓ ସ୍ୱାଭିମାନକୁ ଗଭୀର ଆଘାତ ଦେଇଥିଲା । ନାଟକର ରାଜା ଚରିତ୍ର ମାଧ୍ୟମରେ ନାଟ୍ୟକାର ସେମାନଙ୍କ ଜୀବନର ଅସହାୟତାକୁ ସୁନ୍ଦର ଭାବେ ଉପସ୍ଥାପନ କରିଛନ୍ତି । ଈଶ୍ୱରଙ୍କ ପ୍ରଶ୍ନର ଉତ୍ତର ଦେଇ ରାଜା କୁହନ୍ତି- "ପରମ୍ପରାର ଅନୁରୋଧରେ ଏଠି ମୁଁ ଈଶ୍ୱରଙ୍କ ପ୍ରତିନିଧି । ହେଲେ ମୋର ସବୁକାର୍ଯ୍ୟ ନିୟନ୍ତ୍ରିତ । କୁହନ୍ତୁ ପ୍ରଭୁ, କେତେକାଳ ଏମିତି ଯେ ଜନଗଣଙ୍କ ହାତରେ ଖେଳନା ସାଜି ନାଚୁଥିବି ।" ପୁଣି କୁହନ୍ତି- "ସମୟ ହିଁ ମୋତେ କାବୁ କରିଦେଲା ପ୍ରଭୁ । ରାଜତନ୍ତ୍ର ଚାଲିଗଲା । ହେଲେ ରାଜା ନାମଧାରୀ ବ୍ୟକ୍ତିଟା ବଞ୍ଚି ରହିଲା, ବିଧ୍ୱସ୍ତ ରାଜତନ୍ତ୍ରର ଗରଳପାନ କରିବାପାଇଁ ।"

ବର୍ତ୍ତମାନ ସମାଜରେ ଘଟୁଥିବା ବିଭିନ୍ନ ଘଟଣାକୁ ପ୍ରସଙ୍ଗୋଚିତ ଭାବରେ ନାଟ୍ୟକାର ତାଙ୍କ ନାଟକରେ ବିଭିନ୍ନ ସ୍ଥଳରେ ସ୍ଥାନ ଦେଇଛନ୍ତି, ଯେଉଁଥିରୁ କେବଳ ନାଟ୍ୟକାରଙ୍କ ସାମାଜିକ ଚେତନାକୁ ଉପଲବ୍ଧ କରିହୁଏ ନାହିଁ; ବରଂ ଦର୍ଶକମାନଙ୍କୁ ସମାଜରେ ଘଟିଚାଲିଥିବା ବିଭିନ୍ନ ଘଟଣା ସମ୍ପର୍କରେ ସଚେତନ କରାଇ ଦେଇଥାଏ ଓ ସେମାନଙ୍କ ସାମାଜିକ ଚେତନାକୁ ଊର୍ଦ୍ଧ୍ୱମୁଖୀ କରିଥାଏ ।

ଆଶ୍ରା ଖୋଜିବୁଲୁଥିବା ଈଶ୍ୱରର ଆତ୍ମିକ ବିଭବ :- ଗୋଟିଏ ସୃଷ୍ଟିର ସାର୍ଥକତା ପ୍ରମାଣିତ ହୋଇଥାଏ ତା'ର ଆତ୍ମିକ ବିଭବରୁ । ଗୋଟିଏ ସମାଜରେ ଜୀବନ ବଞ୍ଚୁଥିବା ସ୍ରଷ୍ଟା ଯେଉଁ ବାସ୍ତବତାର ସମ୍ମୁଖୀନ ହୋଇଥାଏ ତାହାକୁ ସେ କଳାତ୍ମକ ରୂପପ୍ରଦାନ କରିଥାଏ ତାର ସୃଷ୍ଟିରେ । ନାଟ୍ୟକାର ସାହୁଙ୍କ ଏହି ନାଟକରେ ତାଙ୍କ ଦୃଷ୍ଟିର ଯେଉଁ ବିଭିନ୍ନତା ପରିଲକ୍ଷିତ ହୋଇଛି, ଏଠାରେ ତାର ସୂଚନା ପ୍ରଦାନ କରାଯାଇପାରେ ।

(କ) ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ :- ପ୍ରତ୍ୟେକ ସଚେତନ ସ୍ରଷ୍ଟା ବାସ୍ତବବାଦୀ । କାରଣ ସେ ତା' ଚତୁଃପାର୍ଶ୍ୱରେ ଯାହା ଦେଖେ, ତାକୁ ରୂପାୟିତ କରିବାକୁ ଚେଷ୍ଟା କରିଥାଏ । ଅବଶ୍ୟ ଏଥିରେ କଳ୍ପନା ଯେ ନ ଥାଏ, ତାହା ନୁହେଁ । କାରଣ ନିଛକ ବାସ୍ତବତା ଗୋଟିଏ କଳା ସୃଷ୍ଟିକୁ ସର୍ବଜନ ଗ୍ରାହ୍ୟ କରିପାରି ନ ଥାଏ । ନାଟ୍ୟକାର ନାରାୟଣ ସାହୁଙ୍କ ଆଲୋଚ୍ୟ ନାଟକରେ ବହୁ ବାସ୍ତବ ଘଟଣା ପରିଲକ୍ଷିତ ହୋଇଥାଏ, ଯାହାକୁ ଅସ୍ୱୀକାର କରାଯାଇ ନ ପାରେ । ପୁଣି ଏପରି ଘଟଣାକୁ ଆମେ ବାରମ୍ବାର ପ୍ରତ୍ୟକ୍ଷ ମଧ୍ୟ କରୁଛୁ ।

ସମାଜରେ ଯେଉଁମାନେ ସମ୍ମାନିତ ବ୍ୟକ୍ତି ବୋଲି ନିଜକୁ ପ୍ରଚାର କରିଥାନ୍ତି, ସେମାନଙ୍କ ମନ ମଧ୍ୟରେ କିପରି କୁତ୍ସିତ ଭାବନାମାନ ଲୁକ୍‌କାୟିତ ହୋଇ ରହିଥାଏ, ତାଙ୍କ ଜୀବନ ଧାରାକୁ ଅନୁଶୀଳନ ନ କଲେ ଜାଣି ହେବ ନାହିଁ । ଧର୍ମ ଅନ୍ତରାଳରେ ସାଧାରଣ ମଣିଷକୁ ଠକାଇବା, ନିଜକୁ ସତ୍‌ଚରିତ୍ର ରୂପେ ବାହାରକୁ ପ୍ରଦର୍ଶିତ କରି ରାତ୍ରିର ଅନ୍ଧକାରରେ ନିଜ କୁ-ପ୍ରବୃତ୍ତିକୁ ଚରିତାର୍ଥ କରିବା, ଆବଶ୍ୟକ ହେଲେ ନିଜ ପଦବୀର ଅମର୍ଯ୍ୟାଦା କରି ବ୍ୟକ୍ତିଗତ ଫାଇଦା ଉଠାଇବା ଏମାନଙ୍କ ଚରିତ୍ରର ଗୋଟିଏ ଗୋଟିଏ ବିଶେଷ ଗୁଣ । ମହାସେବକ ହେଉଛି ସେହିପରି ଜଣେ ଚରିତ୍ର । ନାଟ୍ୟକାର ଏହି ଚରିତ୍ରର ବାସ୍ତବ ଦିଗଟିକୁ ଉନ୍ମୋଚନ କରିଛନ୍ତି ତାଙ୍କ ନାଟକରେ । ପ୍ରତ୍ୟେକ ନାରୀ ହୃଦୟ ସନ୍ତାନଟିଏ ପାଇଁ ବ୍ୟାକୁଳ ହୋଇଥାଏ । ଏହି ବାସ୍ତବ ସତ୍ୟକୁ ଆମେ ପ୍ରତ୍ୟକ୍ଷ କରିପାରିବା ମେରୀ ଚରିତ୍ର ମାଧ୍ୟମରେ । ଗ୍ୟାସ ଦୁର୍ଘଟଣାରେ ନିଜର ଏକମାତ୍ର ସନ୍ତାନ ତଥା ମାତୃତ୍ୱକୁ ହରାଇବାପରେ ମଧ୍ୟ ମାତା ହେବାର କାମନା ତା' ମଧ୍ୟରେ ବଳବତ୍ତର ହୋଇ ରହିଛି । ସେଥିପାଇଁ ସେ ଈଶ୍ୱର ନିବାସ ଆସିଛି ଈଶ୍ୱରଙ୍କୁ ଦର୍ଶନ କରି ତାଙ୍କ ଆଶୀର୍ବାଦରୁ ପୁନଃ ସନ୍ତାନ ସମ୍ଭବା ହେବା ନିମିତ୍ତ । ଗୋଟିଏ ମାତୃହୃଦୟର ବାସ୍ତବ ଅନୁଭୂତିକୁ ନାଟ୍ୟକାର ଏହି ନାଟକ ମଧ୍ୟରେ ପ୍ରକାଶ କରିଛନ୍ତି । ମହାସେବକଙ୍କ ଯୋଶେଫ୍ ପ୍ରତି ଖରାପ ବ୍ୟବହାର ସତ୍ତ୍ୱେ ସେ ତାଙ୍କ ଉପରେ ବିଶ୍ୱାସ ସ୍ଥାପନ କରି ଈଶ୍ୱରଙ୍କ ଦର୍ଶନାର୍ଥେ ଯାଇଛି । ଏହା ପଛରେ ଗୋଟିଏ ନାରୀର ବାସ୍ତବ ଅଭିଳାଷକୁ ବେଶ୍ ବୁଝି ହୋଇଥାଏ । ଦେବଦାସୀ ଲୀଳା ଚରିତ୍ର ମଧ୍ୟରେ ଗୋଟିଏ ନାରୀର

ବାସ୍ତବ ଅଭୀପ୍ସାକୁ ଅନୁଭବ କରାଯାଇପାରେ । ନାରୀ ମଧ୍ୟରେ ଗୋଟିଏ ଯୌନାବେଗ ରହିଛି ଓ ସେ ତାହା ପୂରଣ କରିବାକୁ ଚାହେଁ । ମାତ୍ର ପରିବେଶ ଏବଂ ପରିସ୍ଥିତି ତାକୁ ସେହି କାର୍ଯ୍ୟ କରିବାକୁ ବାରଣ କରିଥାଏ । ଲୀଳା ମନର ଏହି ଅଭାବ ହିଁ ତାକୁ ମହାସେବକର ନିକଟବର୍ତ୍ତୀ କରିଥିଲା ଏବଂ ସେ ମହାସେବକଙ୍କୁ ଆହ୍ୱାନ କରିଥିଲା ତାକୁ ବିବାହ ନିମିତ୍ତ । କିନ୍ତୁ ପୁରୁଷ ସ୍ୱାର୍ଥପର । ନାରୀ ସହିତ ଯୌନ ସମ୍ପର୍କ ରକ୍ଷାକରିବାକୁ ଚାହେଁ ଅଥଚ ସାମାଜିକ ଭୟ ତାଙ୍କୁ ସେହି ନାରୀର ପାଣିଗ୍ରହଣ କରିବା କ୍ଷେତ୍ରରେ ଆକଟ କରିଥାଏ । ନାରୀର ସମର୍ପଣ ଓ ଭଲପାଇବା ଏବଂ ପୁରୁଷର ସମର୍ପଣ ଓ ଭଲପାଇବା ମଧ୍ୟରେ ଏହିଠାରେ ହିଁ ପାର୍ଥକ୍ୟ । ଦେବଦାସୀ ତଥା ମହାସେବକ ଚରିତ୍ର ଅନ୍ତରାଳରେ ରହିଥିବା ଏହି ବାସ୍ତବ ଦିଗଟିକୁ ନାଟ୍ୟକାର ଚମତ୍କାର ଢ଼ଙ୍ଗରେ ରୂପାୟିତ କରିଛନ୍ତି । ଯେଉଁମାନେ ବିଭିନ୍ନ ମନ୍ଦିରକୁ ଯାଇଥିବେ, ସେମାନେ ନିଶ୍ଚିତ ଭାବରେ ପଣ୍ଡା ସେବକ ମାନଙ୍କ ଚରିତ୍ର ସମ୍ବନ୍ଧରେ ଅବହିତ ରହିଥିବେ । ସେମାନଙ୍କର ଶୋଷଣ ପ୍ରବୃତ୍ତି ଅନେକ ସମୟରେ ଭକ୍ତମାନଙ୍କୁ ବ୍ୟଥିତ କରିଥାଏ । ପଣ୍ଡାମାନଙ୍କ ଚରିତ୍ରର ଏହି ବାସ୍ତବ ଦିଗଟିକୁ ମହାସେବକ ଚରିତ୍ର ମାଧ୍ୟମରେ ଲକ୍ଷ୍ୟ କରାଯାଇପାରେ । ପୁଣି ମନ୍ଦିରରେ ପଣ୍ଡାମାନଙ୍କର ଅନୈତିକ କାର୍ଯ୍ୟ, ସେମାନଙ୍କ ମନମୁଖୀ ଆଚରଣ ନିକଟରେ ମନ୍ଦିର ପ୍ରଶାସକ ମଧ୍ୟ ନୀରବ । ରାଜା, ମନ୍ଦିର ପ୍ରଶାସନକୁ, ପ୍ରଶାସନ ବ୍ୟବସ୍ଥାକୁ ଅଧିକ କଡ଼ା କରିବାକୁ ଉପଦେଶ ଦିଅନ୍ତେ ପ୍ରଶାସକ ନିଜର ଅସହାୟତା ପ୍ରକାଶ କରି କହିଛନ୍ତି- "ନାମକୁ ମାତ୍ର ମୁଁ ପ୍ରଶାସକ । କିନ୍ତୁ ପ୍ରକୃତରେ ଈଶ୍ୱର ନିବାସର ସବୁକାର୍ଯ୍ୟ ସେବକ, ପୂଜକମାନଙ୍କ ନିର୍ଦ୍ଦେଶରେ ଚାଲେ ।" ପ୍ରଶାସକଙ୍କ ଅସହାୟତା ମଧ୍ୟରେ ଆମ ମନ୍ଦିର ମାନଙ୍କରେ ନିଯୁକ୍ତ ସେବକ ତଥା ପଣ୍ଡା ମାନଙ୍କ ଚରିତ୍ରର ବାସ୍ତବଦିଗ ଦ୍ୟୋତିତ ।

**(ଖ) ମାନବବାଦୀ ଦୃଷ୍ଟିକୋଣ :-** ସ୍ରଷ୍ଟା ମାନବବାଦୀ ନ ହେଲେ ସୃଷ୍ଟି ସମ୍ଭବ ନୁହେଁ । କାରଣ ମାନବିକ ସମ୍ବେଦନଶୀଳତା ହିଁ ଜଣେ ସ୍ରଷ୍ଟାକୁ ଜୀବନ ଓ ଜଗତ ପ୍ରତି ଅନୁରାଗୀ କରିଥାଏ । ବିଶେଷ କରି ସମାଜର ଅବହେଳିତ, ନିପୀଡ଼ିତ ବ୍ୟକ୍ତିଙ୍କ ପ୍ରତି ସ୍ରଷ୍ଟା ହୃଦୟରେ ଭରି ରହିଥାଏ ଗଭୀର ସମ୍ବେଦନା । ଏହି ସମ୍ବେଦନ ଭାବ ହିଁ ମାନବବାଦୀ ଚିନ୍ତାଧାରାକୁ ଜନ୍ମ ଦେଇଥାଏ । ନାଟକ କେବଳ ମନୋରଞ୍ଜନ କରେ ନାହିଁ, ପ୍ରତ୍ୟେକ ମଣିଷକୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଭଲପାଇବାକୁ ପ୍ରେରିତ କରିଥାଏ । ନାଟ୍ୟକାର ନାରାୟଣ ସାହୁଙ୍କ ମାନବବାଦୀ ଦୃଷ୍ଟିଭଙ୍ଗୀ ନାଟକରେ ବହୁକ୍ଷେତ୍ରରେ ଲକ୍ଷ୍ୟ କରାଯାଇପାରେ । 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର'ରେ ଈଶ୍ୱର ଚରିତ୍ରକୁ ଏକ ଦୈବୀଚରିତ୍ର ଭାବରେ ଉପସ୍ଥାପନ ନ କରି ତାକୁ ସମ୍ପୂର୍ଣ୍ଣ ଭାବରେ ମାନବାୟିତ କରିଦେଇଛନ୍ତି । ମହାସେବକଙ୍କ ଅନୈତିକ କାର୍ଯ୍ୟକଳାପ

ପ୍ରତି ସେ ପ୍ରତିକ୍ରିୟାଶୀଳ ହୋଇଛନ୍ତି । ତେଣୁ ମହାସେବକଙ୍କୁ କହିଛନ୍ତି- "କେବଳ ତମରିମାନଙ୍କ ଦୌରାତ୍ମ୍ୟରେ ଆଜି ସର୍ବତ୍ର ଦେବପୀଠ କଳଙ୍କିତ । ଧର୍ମର ମଦ ଖୁଆଇ ଏ ଦେଶର ଜନତାଙ୍କୁ ତମେ ପ୍ରତାରିତ କରିଛ ।" ଈଶ୍ୱରଙ୍କ ଚରିତ୍ରର ମହନୀୟ ଦିଗରୁ ତାଙ୍କ ମାନବବାଦୀ ଦୃଷ୍ଟିଭଙ୍ଗୀଟି ବେଶ୍ ବାରିହୋଇପଡ଼େ । 'ସମୟ' ସହିତ ବାକ୍ୟାଳାପ ସମୟରେ ଈଶ୍ୱର ଯାହା କହିଛନ୍ତି, ବାସ୍ତବରେ ତାହା ବିଚାର ଯୋଗ୍ୟ । ତାଙ୍କ ଧାର୍ମିକ ଉଦାରତା ହିଁ ପ୍ରମାଣ କରିଥାଏ ଈଶ୍ୱରଙ୍କ ମାନବବାଦୀ ଦୃଷ୍ଟିଭଙ୍ଗୀକୁ । ତାଙ୍କରି ଭାଷାରେ- "ମୋ ସୃଷ୍ଟିରେ କେବଳ ଗୋଟିଏ ଧର୍ମ ରହିଛି, ସେଇଟି ହେଉଛି ମାନବ ଧର୍ମ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟ, ଶିଖ୍, ଜୈନ, ବୌଦ୍ଧ ଏସବୁ ସେହି ଗୋଟିଏ ରୂପର କେବଳ ରୂପାନ୍ତର ମାତ୍ର ।" 'ସମୟ' କିନ୍ତୁ ପ୍ରଶ୍ନ କରିଥିଲା ବିଭିନ୍ନ ସଂଘର୍ଷ ଓ ସାଂପ୍ରଦାୟିକ ଗଣ୍ଡଗୋଳ ତଥା ବିଭିନ୍ନ ଧର୍ମ ସଂପ୍ରଦାୟର ଯୁଦ୍ଧଖୋର ମନୋବୃତ୍ତି ସମ୍ପର୍କରେ । ଏହାର ଉତ୍ତର ଦେଇ ଈଶ୍ୱର କହିଥିଲେ- "ସ୍ୱାର୍ଥରେ ଅନ୍ଧ ମଣିଷ ମତେ ଖୋଜୁଥିଲା ମନ୍ଦିର ଆଉ ମସ୍‌ଜିଦ୍ ଭିତରେ । ହେଲେ ମୋର ସ୍ଥାନ ଉପାସନା ମନ୍ଦିର ନୁହେଁ, ବ୍ୟକ୍ତିର ହୃଦୟ କନ୍ଦର । ନିହିତ ସ୍ୱାର୍ଥଯୋଗୁ ମଣିଷକୁ ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ଗୁରୁଦ୍ୱାର ସବୁ ଅଲଗା ଅଲଗା ଦେଖାଯାଉଥିଲା ।" ଈଶ୍ୱରଙ୍କ ଏହି ଉକ୍ତିରେ ତାଙ୍କ ମାନବବାଦୀ ଚିନ୍ତାଧାରାର ପ୍ରତିଫଳନ ଘଟିଛି । ଧର୍ମକୁ ନେଇ ସଂଘର୍ଷ ଯେକୌଣସି ମାନବବାଦୀ ସ୍ରଷ୍ଟାଙ୍କୁ ମ୍ରିୟମାଣ କରିଥାଏ । ନାଟ୍ୟକାର ଏହି ନାଟକରେ ସେହି ବିଷୟର ବାରମ୍ବାର ଉଲ୍ଲେଖ କରିଛନ୍ତି । ଭୋପାଳ ଗ୍ୟାସ ଦୁର୍ଘଟଣାରେ ହଜାର ହଜାର ନିରୀହ ଲୋକଙ୍କ ଅକାଳ ବିୟୋଗ, ପଙ୍ଗୁତ୍ୱ ବରଣ; ମେରୀ ପ୍ରତି ମହାସେବକର ଅମାନୁଷିକ ବ୍ୟବହାର ଓ ହତ୍ୟା, ଯୋଶେଫର ଧର୍ମକୁ ନେଇ ଆକ୍ଷେପ ମାନବବାଦୀ ନାଟ୍ୟକାରଙ୍କୁ ପ୍ରତିକ୍ରିୟାଶୀଳ କରିଛି । ସେ ଭୋପାଳ ଗ୍ୟାସ ଦୁର୍ଘଟଣାରେ ଜୀବନ ହରାଇଥିବା ବ୍ୟକ୍ତି ତଥା ମେରୀର ଅକାଳ ମୃତ୍ୟୁରେ ଗଭୀର ସମ୍ବେଦନଶୀଳ ହୋଇଛନ୍ତି, ଯାହା ତାଙ୍କ ମାନବବାଦୀ ଦୃଷ୍ଟିଭଙ୍ଗୀର ପରିଚାୟକ ।

(ଗ) **ବୈପ୍ଳବିକ ଅଭିବ୍ୟକ୍ତି :-** ଯେତେବେଳେ ସମାଜରେ ମୂଲ୍ୟବୋଧରେ ସଙ୍କଟ ଆସେ, ବ୍ୟକ୍ତି ଚରିତ୍ରର ଅଧୋଗତି ଘଟେ, ନୈତିକ ଜୀବନ ବିପନ୍ନ ହୋଇଉଠେ, ସମାଜରେ ଦୁର୍ନୀତି ଓ ସ୍ୱାର୍ଥପରତା ଦେଖାଯାଏ, ସେତେବେଳେ ସଚେତନ ସ୍ରଷ୍ଟା ନିଜ ସୃଷ୍ଟି ମାଧ୍ୟମରେ ବିପ୍ଳବର ସ୍ୱର ତୋଳେ । ଅନ୍ୟାୟ ବିରୋଧରେ ସଂଗ୍ରାମ କରିବାକୁ ସାଧାରଣ ଜନସମାଜକୁ ସଚେତନ କରିଥାଏ । 'ଆଗ୍ରା ଖୋଜି ବୁଲୁଥିବା ଈଶ୍ୱର'ରେ ବହୁଦେଶୀୟ ୟୁନିଅନ କାରବାଇଡ଼ କମ୍ପାନୀର କାରଖାନାରୁ ଗ୍ୟାସ ନିର୍ଗତ ଯୋଗୁଁ ହଜାର ହଜାର ଲୋକ ଅକାଳରେ ଝଡ଼ିଗଲେ । ପଙ୍ଗୁ ହେଲେ

ଆହୁରି ଅନେକ । ମାତା ହରାଇଲା ସନ୍ତାନ ଓ ମାତୃତ୍ୱ ଅଥଚ କମ୍ପାନୀ ଅଳ୍ପ କେତୋଟି ଟଙ୍କା କ୍ଷତିପୂରଣ ଦେଇ ଖସିଗଲା । ସରକାରୀ ସ୍ତରରେ ଏପରି କାର୍ଯ୍ୟକଳାପ ନାଟ୍ୟକାରଙ୍କୁ ପ୍ରତିକ୍ରିୟାଶୀଳ କରିଛି । ବହୁ ଦେଶୀୟ କମ୍ପାନୀ ନିକଟରେ ସରକାରଙ୍କ ଆତ୍ମସମର୍ପଣ ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି ନାଟ୍ୟକାର । ଅନୁରୂପ ଭାବେ ଈଶ୍ୱରଙ୍କୁ ନେଇ ରାଜନୀତି କରୁଥିବା ବ୍ୟକ୍ତି, ଧର୍ମକୁ ବ୍ୟବସାୟର ମାଧ୍ୟମ ରୂପେ ଗ୍ରହଣ କରିଥିବା ଭଣ୍ଡ, ଚରିତ୍ରହୀନ ପଣ୍ଡା, ପୁରୋହିତଙ୍କ କାର୍ଯ୍ୟକଳାପ ବିରୋଧରେ ନାଟକର ଅନେକ କ୍ଷେତ୍ରରେ ପ୍ରତିକ୍ରିୟା ପ୍ରକାଶ କରାଯାଇଛି । ଦ୍ୱାଦଶ ଦୃଶ୍ୟରେ ନିର୍ବାଚନ ରଣାଙ୍ଗନରେ ସୁଲେମାନ ଓ ଯୋଶେଫ୍ କଣ୍ଠରେ ଯେଉଁ ବିଦ୍ରୋହର ସ୍ୱର ପ୍ରକାଶ ପାଇଛି ତାହା ପ୍ରକୃତରେ ନାଟ୍ୟକାରଙ୍କ ସ୍ୱର । ନାଟ୍ୟକାରଙ୍କ ବୈପ୍ଳବିକ ଆଭିମୁଖ୍ୟ ବିଭିନ୍ନ କ୍ଷେତ୍ରରେ ପ୍ରତିଫଳିତ ।

**(ଘ) ମନସ୍ତତ୍ତ୍ୱ :-** ଫ୍ରଏଡ୍ ମଣିଷର ମନୋଜଗତ ସମ୍ପର୍କରେ ଅଧ୍ୟୟନ ସମୟରେ ଜାଣିଥିଲେ, ମଣିଷର ଚେତନସ୍ତର ଅପେକ୍ଷା ଅବଚେତନସ୍ତର ଅଧିକ ଶକ୍ତିଶାଳୀ ଓ ସକ୍ରିୟ । ବିଶେଷ କରି ମଣିଷର ଯୌନ ପ୍ରବୃତ୍ତି ତାର ଅଧିକାଂଶ କ୍ରିୟା-କଳାପକୁ ନିୟନ୍ତ୍ରିତ କରିଥାଏ । ଏହି ପ୍ରବୃତ୍ତି ବେଳେବେଳେ ମଣିଷକୁ ସମାଜର ଲକ୍ଷ୍ମଣରେଖାକୁ ଅତିକ୍ରମ କରିବାକୁ ପ୍ରଚୋଦିତ କରିଥାଏ । ନାଟ୍ୟକାର 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ବିଭିନ୍ନ ଚରିତ୍ରଙ୍କ କ୍ରିୟା-କଳାପ ମାଧ୍ୟମରେ ମଣିଷର ଏହି ମନସ୍ତତ୍ତ୍ୱକୁ ପରୀକ୍ଷା କରିଛନ୍ତି । ମହାସେବକ ଦେବଦାସୀ ଲୀଳାମୟୀଙ୍କ ଚରିତ୍ର ବିଶ୍ଳେଷଣ କରିବା ସମୟରେ ନାଟ୍ୟକାର ସେମାନଙ୍କ ଚରିତ୍ରର ଅନ୍ଧକାର ଇଲାକାକୁ ଆବିଷ୍କାର କରିଛନ୍ତି । ମହାସେବକ ଈଶ୍ୱରଙ୍କ ସେବାକାରୀ ହେଲେହେଁ ସେ ଲୀଳାମୟୀଙ୍କ ସହିତ ଅନୈତିକ ସମ୍ପର୍କ ରଖିଛି । ଲୀଳାମୟୀ ଈଶ୍ୱରଙ୍କ ପ୍ରତି ସମର୍ପିତ ହେଲେହେଁ ତା'ଦେହର ଭୋକ ତାକୁ ବାଧ କରିଛି ମହାସେବକ ସହିତ ଅନୈତିକ ସମ୍ପର୍କ ସ୍ଥାପନ ପାଇଁ । କାମନାର ବହ୍ନିରେ ଉଭୟ ପୋଡ଼ିହୋଇଛନ୍ତି । ତେଣୁ ତ ମହାସେବକ କହିଛି- "କେବଳ ତମରିପାଇଁ ରାତିର ଅନ୍ଧାର ନ ମାନି ଏଠାକୁ ଛୁଟି ଆସେ । ଈଶ୍ୱର ନିବାସର ନୀତିନିୟମ ମୋ ପଥରେ କଣ୍ଟା ହୋଇ ଦେଖାଦେଇଛି । ଖାଲି ରାତିର ଅନ୍ଧାର ଯାହା ମୋ' ପାଇଁ ପଥ ପରିଷ୍କାର କରିଦେଇଛି ।" ଏହି ଯୌନକାମନାର ବଶବର୍ତ୍ତୀ ହୋଇ ମହାସେବକ ମେରୀକୁ ଧର୍ଷଣ ପରେ ହତ୍ୟା କରିଛ । ଲୀଳାମୟୀ ସେଦିନ ମହାସେବକର ପ୍ରଶଂସା ଶୁଣିବାବେଳେ କହିଥିଲା- "ନିଜର ବୋଲି ଭାବୁଥିବା ମଣିଷଠାରୁ ଏ ଦେବଦାସୀ ଅନେକ କିଛି ଆଶା କରୁଥିଲା" ଏବଂ ପରବର୍ତ୍ତୀ ସମୟରେ ସେ ନିଜର ଅଭିଳାଷ ପ୍ରକାଶ କରି କହିଛି- "କାଲି ଈଶ୍ୱରଙ୍କ ଦରବାରରେ ଜନତାଙ୍କୁ ସାକ୍ଷୀରଖି ତମେ ମତେ ବିବାହ କରିପାରିବ ?" ନାଟକରେ ପଞ୍ଚମ ଦୃଶ୍ୟରେ

ମହାସେବକ ଓ ଦେବଦାସୀର ଅନ୍ତରଙ୍ଗ ମୁହୂର୍ତ୍ତ ସେମାନଙ୍କ ମନ ଜଗତର ବହୁ ରହସ୍ୟକୁ ଉନ୍ମୋଚିତ କରିଦେଇଛି । ନାଟକଟିରେ ନାଟ୍ୟକାର ବିଭିନ୍ନ ଚରିତ୍ରଙ୍କ ଚାରିତ୍ରିକ କ୍ରିୟା-କଳାପ ମାଧ୍ୟମରେ ମଣିଷ ମନର ସମ୍ପୃକ୍ତ ଭାବଧାରାକୁ ଅତ୍ୟନ୍ତ ସୁନ୍ଦରଭାବରେ ରୂପାୟିତ କରିଛନ୍ତି ।

(ଙ) ଆଧ୍ୟାତ୍ମିକତା :- ନାଟ୍ୟକାର ସାହୁଙ୍କ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଧର୍ମପ୍ରତି ଏକ ନେତିବାଚକ ଦୃଷ୍ଟିଭଙ୍ଗୀ ପରିଦୃଷ୍ଟ ହୋଇଥାଏ । ଏହାର କାରଣ ହେଉଛି ଧର୍ମ ଏକ ଉଦାର ଭାବନା, ଯାହା ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିଥାଏ । ମାତ୍ର ଯେଉଁଠି ଧର୍ମ ଓ ଈଶ୍ୱରଙ୍କୁ ନେଇ ଯୁଦ୍ଧ ତାକୁ ଧର୍ମ ଭାବରେ ଗ୍ରହଣ କରିବାକୁ ନାଟ୍ୟକାର ପସନ୍ଦ କରିନାହାଁନ୍ତି । ଧର୍ମକ୍ଷେତ୍ର ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ଅଥଚ ଜାତି ଓ ବର୍ଣ୍ଣର ଦ୍ୱାହି ଦେଇ କିଛି ମଣିଷ ଧର୍ମ ନାମରେ ସାଂପ୍ରଦାୟିକ ଦଙ୍ଗା ସୃଷ୍ଟିକରିଥାନ୍ତି । ଲିଙ୍ଗଗତ ବିଚାରରେ ଧର୍ମକୁ ପୃଥକ କରିଥାନ୍ତି । ନିଜର ବ୍ୟକ୍ତିଗତ ଫାଇଦାପାଇଁ କିଛି ବ୍ୟକ୍ତି ଧର୍ମକୁ ବ୍ୟବସାୟରେ ପରିଣତ କରିଥାନ୍ତି । ଆଜି ସମଗ୍ର ବିଶ୍ୱ ଧର୍ମଗତ ବିଭେଦକୁ ନେଇ ଭାଗଭାଗ ହୋଇଯାଇଛି । ଏହାଦ୍ୱାରା ମାନବ ସମାଜର ଲାଭ କ'ଣ ହୋଇଛି ? ସେଇଥିପାଇଁ ଈଶ୍ୱରଙ୍କୁ ସମୟ କହିଛି- "ସାରା ବିଶ୍ୱ ଆଜି ତମ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାକୁ ଯାଉଛି । ସେମାନଙ୍କ ଯୁକ୍ତି, ପୃଥିବୀରୁ ତମର ଆବଶ୍ୟକତା ଶେଷ ହୋଇଛି । ଏଣିକି ସମାଜ ବିନା ଈଶ୍ୱରରେ ପରିଚାଳିତ ହେବ ।" ଜାତି-ବର୍ଣ୍ଣ-ଧର୍ମ-ନିର୍ବିଶେଷରେ ଈଶ୍ୱର ସମସ୍ତପାଇଁ ସମାନ । ନାମ ଭିନ୍ନ ହୋଇପାରେ । ଅଥଚ ସମାଜରେ ଏହାକୁ ନେଇ ଅନେକ ବିରୋଧାଭାସ । ଧର୍ମ ଜାତିପ୍ରଥାକୁ କରିଛ ସଂକୀର୍ଣ୍ଣ । ମଣିଷ ମନରୁ ଚୋରାଇ ନେଇଛି ଉଦାର ଭାବନା । ପରିବର୍ତ୍ତେ ଗୋଷ୍ଠୀ ସଂଘର୍ଷକୁ କରିଛି ପ୍ରୋତ୍ସାହିତ ।

ମେରୀ ଓ ଯୋଶେଫ୍ ଏକ ଉଦାର ହୃଦୟ ନେଇ ଆସିଥିଲେ ଈଶ୍ୱରଙ୍କ ଦର୍ଶନ ନିମିତ୍ତ । ମାତ୍ର ମହାସେବକ କହିଛି- "ତମେ ଦିହେଁ ଖ୍ରୀଷ୍ଟିଆନ । ଈଶ୍ୱରଙ୍କ ଦର୍ଶନ ସମ୍ଭବ ନୁହେଁ ।" ଯୋଶେଫ୍ କହିଛି- ଈଶ୍ୱର ତ ସମସ୍ତଙ୍କର । ସବୁ ଧର୍ମର । ସବୁ ମଣିଷଙ୍କର ।' ରୁଢ଼ିବଦ୍ଧ ଧାରଣା ନେଇ ବଞ୍ଚିଥିବା ମହାସେବକ ତାକୁ ଗ୍ରହଣ କରିପାରି ନାହିଁ । ସେଥିପାଇଁ ପ୍ରତିକ୍ରିୟାଶୀଳ ଯୋଶେଫ୍ କହିଛି- 'ତା' ହେଲେ କାହିଁକି ପ୍ରଚାର କରୁଛ, ଈଶ୍ୱର ସର୍ବଧର୍ମ ସମନ୍ୱୟର ଦେବତା ?' ଏ ପ୍ରଶ୍ନ କେବଳ ଯୋଶେଫଙ୍କର ନୁହେଁ ସବୁ ଭକ୍ତଙ୍କର । ନାଟ୍ୟକାର ନାରାୟଣ ସାହୁ ଧର୍ମନାମରେ ଭଣ୍ଡାମି, ମିଥ୍ୟାଚାର ଓ ପ୍ରତାରଣାକୁ ମର୍ମେ ମର୍ମେ ଉପଲବ୍ଧି କରିଥିଲେ ଓ ନିଜର ପ୍ରତିବାଦକୁ ଯୋଶେଫ୍ ଚରିତ୍ର ମାଧ୍ୟମରେ ପ୍ରକାଶ କରିଛନ୍ତି । ମହାସେବକ ଯୋଶେଫଙ୍କୁ ମୂର୍ଖ, ପାପୀ, ବିଧର୍ମୀ କହିବାରୁ ତାର ଉତ୍ତର ଦେଇ ଯୋଶେଫ୍

କହିଛି- 'କେତେଦିନ ଧର୍ମକୁ ଅଣ୍ଟିଭିତରେ ପୂରାଇ ନିଜର ପ୍ରଭୁତ୍ୱ ଜାହିର କରିଚାଲିବ ? କେବଳ ଏଇଥିପାଇଁ ସେଦିନ କଳାପାହାଡ଼ ହିନ୍ଦୁ ମନ୍ଦିର ଆକ୍ରମଣ କରିଥିଲା । ହେ ଈଶ୍ୱର ! କେତେଦିନ ତମେ ଏମିତି ଯେ ପୁରୋହିତ, ପୂଜକ, ସେବକମାନଙ୍କ ହାତରେ କ୍ରୀଡ଼ାନକ ସାଜି ଖେଳୁଥିବ ?' ଯୋଶେଫ୍‌ର ପ୍ରତିବାଦ ଭିତରେ ନାଟ୍ୟକାରଙ୍କ ସ୍ୱର ଗୁଞ୍ଜରିତ । ଯେଉଁ ଧର୍ମରେ ଉଦାରତା, ସହନଶୀଳତା ନାହିଁ ସେପରି ଧର୍ମକୁ ଗ୍ରହଣ କରିବାର ପକ୍ଷପାତୀ ନୁହନ୍ତି ନାଟ୍ୟକାର ଓ ସେଥିପାଇଁ ଧର୍ମକ୍ଷେତ୍ରରେ ତାଙ୍କ ନକାରାତ୍ମକ ଦୃଷ୍ଟିଭଙ୍ଗୀ ପରିପ୍ରକାଶ ହୋଇଥାଏ ।

**(ଚ) ମଣିଷର ଅସହାୟତା :-** ବର୍ତ୍ତମାନ ସମୟରେ ଜୀବନ ବଞ୍ଚୁଥିବା ମଣିଷ ଅନେକତ୍ର ଅସହାୟତାର ଶିକାର ହେଉଛନ୍ତି । ଏହି ଅସହାୟତା କେତେବେଳେ ପାରିବାରିକ କାରଣରୁ ତ ଅନ୍ୟ କେତେବେଳେ ସାମାଜିକ ଅଥବା ରାଷ୍ଟ୍ରୀୟ କାରଣରୁ । ବାବ୍ରୀ ମସ୍‌ଜିଦ୍ ଓ ରାମମନ୍ଦିରକୁ କେନ୍ଦ୍ରକରି ଯେଉଁ ଦୁଃଖଦ ଘଟଣା ଘଟିଗଲା, ତାହା ଉଦାରବାଦୀ ଧର୍ମନିରପେକ୍ଷ ମଣିଷକୁ ବହୁ ପରିମାଣରେ ଅସହାୟ କରି ଦେଇଥିଲା । ଭୋପାଳ ଗ୍ୟାସ ଦୁର୍ଘଟଣା ମଣିଷ ମନରେ ନିଃସଙ୍ଗତା ଓ ଅସହାୟତାର ବୀଜବପନ କରିଥିଲା । ଏହି ଦୁର୍ଘଟଣା ଯୋଗୁଁ ହଜାର ହଜାର ବ୍ୟକ୍ତି ମୃତ୍ୟୁବରଣ କରିଥିଲେ, ଅନେକ ହରାଇଥିଲେ ନିଜର ଜୀବିକା । ଅଗଣିତ ବ୍ୟକ୍ତି ପଙ୍ଗୁହୋଇ ଦୁର୍ବିଷହ ଜୀବନ ଅତିବାହିତ କରିଥିଲେ । ଶିଳ୍ପ ନାମରେ ମଣିଷ ଯେଉଁ ଦୁର୍ବିପାକକୁ ସମ୍ମୁଖୀନ ହୋଇଥିଲା ତାହା ମଣିଷ ମନରେ ଭରିଦେଇଥିଲା ଅସହାୟତା ।

ଧର୍ମକୁ ନେଇ ରାଜନୀତି ଏବଂ ସଂକୀର୍ଣ୍ଣ ଚିନ୍ତାଧାରା ମଧ୍ୟ ମଣିଷକୁ କରିଛି ଅସହାୟ । ମେରୀ ଓ ଯୋଶେଫଙ୍କୁ ଈଶ୍ୱର ଦର୍ଶନରୁ ମହାସେବକ ବଞ୍ଚିତ କରିବାପରେ ସେମାନଙ୍କ ମଧ୍ୟରେ ସୃଷ୍ଟିହୋଇଛି ଅସହାୟତା ଓ ଏହି ଅସହାୟତା ପାଇଁ ସେ ପ୍ରତିବାଦ କରିଛି । ନାଟକରେ ସ୍ୱୟଂ ଈଶ୍ୱର ହେଉଛନ୍ତି ଅସହାୟତାର ପ୍ରତୀକ । ତାଙ୍କ ଭକ୍ତ ମେରୀର ମହାସେବକ ଦ୍ୱାରା ପାଶବତାର ଶିକାର ହେବା ଏବଂ ପରେ ତାକୁ ହତ୍ୟାକରିବା ଜାଣି ମଧ୍ୟ ଈଶ୍ୱର କିଛି କହି ପାରୁନାହାଁନ୍ତି । ବଡ଼ ଅସହାୟ ଭାବରେ ସ୍ୱୟଂ ଈଶ୍ୱର ରାଜାଙ୍କୁ ଅନୁରୋଧ କରିଛନ୍ତି- "ଦିନକୁଦିନ ମୋ ନିବାସରେ ପୂଜକ ଏବଂ ସେବକମାନଙ୍କର ଦୌରାତ୍ମ୍ୟ ବୃଦ୍ଧି ପାଇବାରେ ଲାଗିଛି । ଧର୍ମନାମରେ ଭଣ୍ଡାମି ଆଜି ନୀତି ହୋଇଯାଇଛି । ଏଥିପାଇଁ ତମେ କିଛି ଉପାୟ ଚିନ୍ତାକର ରାଜା ।" କେବଳ ଈଶ୍ୱର ନୁହଁନ୍ତି ସ୍ୱୟଂ ରାଜାମଧ୍ୟ ଅସହାୟ । ମେରୀର ଶବକୁ ଯୋଶେଫ୍ ନିକଟରେ ପହଞ୍ଚାଇ ଦେବାକୁ ଈଶ୍ୱରଙ୍କ ଅନୁରୋଧରେ ବିନମ୍ରତାର ଉତ୍ତରଦେଇ ରାଜା କହିଛନ୍ତି:- 'ପ୍ରଭୁ, ଆପଣ କ'ଣ ମୋ ଅବସ୍ଥା ବିଷୟରେ ଜାଣିନାହାଁନ୍ତି ? ଏଠି ଲୁପ୍ତ ରାଜତନ୍ତ୍ରର ମୁଁ କେବଳ ଜଣେ ସୁପ୍ତ ପ୍ରତିନିଧି ମାତ୍ର ।

ପରମ୍ପରାର ଅନୁରୋଧରେ ମୁଁ କେବଳ ରାଜା ମାତ୍ର ।' ତାଙ୍କର ଚାହିଁବା ସୀମିତ । ହାତଗୋଡ଼ରେ ନିୟମର ବେଡ଼ି । ଏ କ୍ଷେତ୍ରରେ ରାଜା ବା କ'ଣ କରିପାରିବେ ? ଯେଉଁଠି ରାଜା ଅନୁଭବ କରୁଛନ୍ତି ନିଜେ ଈଶ୍ୱର ନିରୂପାୟ ସେ କ୍ଷେତ୍ରରେ ତାର ସୀମା କେତେ ସଂକୁଚିତ ତାହା ସେ ଅନୁଭବ କରିପାରିଛନ୍ତି । ତେଣୁ ରାଜା କହିଛନ୍ତି– "ଆପଣ ବିଶ୍ୱନିୟନ୍ତା ହୋଇ ଯେତେବେଳେ ନିରୁପାୟ, ମୁଁ କ'ଣ କରିପାରିବି ?" ଏଇ ଦେଖୁ ନାହାଁନ୍ତି, ଆପଣଙ୍କ ପ୍ରିୟ ଭକ୍ତର ଶବକୁ । ମୁଁ କିପରି ସ୍ପର୍ଶ ବି କରି କରିପାରୁ ନାହିଁ । ସବୁ ଜାଣୁଛି... ତଥାପି ନିରୁପାୟ ।" ଏହି ନାଟକରେ ଅନେକ ଚରିତ୍ର ଅସହାୟତାର ଶିକାର ହୋଇଛନ୍ତି ବିଭିନ୍ନ କାରଣରୁ । ଏହି ଅସହାୟତା ନାଟ୍ୟବର୍ଣ୍ଣିତ ଚରିତ୍ର ମାନଙ୍କର କେବଳ ନୁହେଁ, ବର୍ତ୍ତମାନ ସମୟର ସବୁ ମଣିଷଙ୍କର ।

**(ଛ) ରସ ପରିଚର୍ଯ୍ୟା :-** ନାଟକରେ ରସ ପରିବେଷଣ ଏକ ମୁଖ୍ୟ ପ୍ରସଙ୍ଗ । ଦର୍ଶକମାନେ ନାଟକ ଦେଖିବାକୁ ଯାଇଥାନ୍ତି ରସ ଉପଭୋଗ ନିମିତ୍ତ । ଯଦି ନାଟ୍ୟକାର ପ୍ରସଙ୍ଗାନୁଯାୟୀ ବିଭିନ୍ନ ରସର ଉପଯୋଗ କରି ନ ପାରିଲେ, ତେବେ ନାଟକଟି ବିଫଳ ହେଲା ବୋଲି କହିବାକୁ ହେବ । ନାଟ୍ୟକାର ନାରାୟଣ ସାହୁ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ପ୍ରସଙ୍ଗାନୁକୂଳ ବହୁ ରସର ବ୍ୟବହାର କରିଛନ୍ତି । ଏଠାରେ ସେଥିରୁ କେତୋଟିର ଉଲ୍ଲେଖ କରାଯାଉଛି ।

ନାଟକର ପ୍ରଥମ ଦୃଶ୍ୟରେ ଓସ୍ତାଦ ଓ ଈଶ୍ୱରଙ୍କ କଥୋପକଥନରେ ହାସ୍ୟ ରସର ଅବତାରଣା କରାଯାଇଛି । ଓସ୍ତାଦଙ୍କ ପ୍ରଥମ ବାକ୍ୟ ହିଁ ଦର୍ଶକ ମନରେ ହାସ୍ୟ ଉଦ୍ରେକ କରିଥାଏ । ଯେମିତି 'ଭାଇମାନେ, ମା'ମାନେ, ମଉସା, ମାଉସୀମାନେ । ତେମେ ଆପଣଙ୍କୁ ୟେ ଓସ୍ତାଦ୍‌ର ପ୍ରଣାମ । ଆରେ ୟେ ଇଶରା, ବାବୁମାନଙ୍କୁ ଟିକେ ପ୍ରଣାମ କର ।' ନାଟକର ଦ୍ୱିତୀୟ ଦୃଶ୍ୟରେ କରୁଣରସ ଓ ବାତ୍ସଲ୍ୟରସର ପରିପ୍ରକାଶ ଘଟିଛି । ମେରୀ ଯେତେବେଳେ ଜାଣିବାକୁ ପାଇଛି, ସେ ଆଉ ମା' ହୋଇପାରିବ ନାହିଁ, ସେତେବେଳେ ସେ ଦୁଃଖରେ ଭାଙ୍ଗିପଡ଼ିଛି । ଯୋଶେଫ୍ ଡ଼ାକ୍ତରୀ ରିପୋର୍ଟ ଲୁଚାଇବାକୁ ଚାହିଁଥିଲେ ହେଁ ତା'ପାଟିରୁ ଅଚାନକ ଯାହା ବାହାରି ଯାଇଛି, ସେଥିରୁ ମେରୀ ପ୍ରକୃତ ବିଷୟ ଅନୁମାନ କରିନେଇଛି । ମେରୀ କହିଛି "ମେରୀକୁ ତୁମେ ଲୁଚାଇବାକୁ ଚେଷ୍ଟା କରୁଛ ? କୁହ ମୋ ରାଣ (ଯୋଶେଫ୍ ନିଶ୍ଚଳ ହୋଇଯାଇଛି) ତମେ କିଛି କହୁନା କାହିଁକି ? କୁହ... ପ୍ରଭୁ ଯୀଶୁଙ୍କ ରାଣ ।" ଠିକ୍ ସେହିପରି ଗ୍ୟାସ୍ ଦୁର୍ଘଟଣାରେ ନିଜର ଏକମାତ୍ର ସନ୍ତାନ ଲୁରାକୁ ହରାଇବାପରେ ତାଙ୍କର ବାତ୍ସଲ୍ୟ ଭାବ ଦୁଃଖରେ ରୂପାନ୍ତରିତ ହୋଇଛି । ପୁନଃସନ୍ତାନ ଲାଭ ପାଇଁ ମେରୀ ମନରେ ଅଭିଳାଷ ଜାଗ୍ରତ ହୋଇଛି ଏବଂ ସେ ଯୋଶେଫ୍ ସହିତ ଈଶ୍ୱରଙ୍କୁ ସାକ୍ଷାତ କରିବାକୁ ଯାଇଛି । ଦଶମ ଦୃଶ୍ୟରେ ଈଶ୍ୱର ମେରୀର

ଶବ ନେଇ ଯୋଶେଫ ନିକଟରେ ପହଞ୍ଚିବାପରେ ସେଠାରେ ଯେଉଁ ପରିବେଶ ସୃଷ୍ଟି ହୋଇଛି, ତାହା କରୁଣ ରସର ଉଦାହରଣ । ଈଶ୍ୱରଙ୍କ କଣ୍ଠରେ ଯେପରି ଅସହାୟତାର ସ୍ୱର, ଯୋଶେଫର ଉଦ୍‌ବିଗ୍ନତା ମଧ୍ୟରେ ବି ସେହି କରୁଣ ରସର ପ୍ରତିଫଳନ । ଯୋଶେଫର- "ମେରୀ... ମେରୀ... ଯେ ମେରୀ... । ଉଠ୍ ଆଉ ଘଡ଼ିକ ପରେ ରାତି ପାହିଯିବ । ଆମେ ଆମ ସ୍ଥାନକୁ ଫେରିଯିବା ।" ସଂଳାପରେ ବେଦନାକ୍ତ ହୃଦୟକୁ ବେଶ୍ ପଢ଼ି ହୋଇଥାଏ । ଠିକ୍ ସେହିପରି ଈଶ୍ୱରଙ୍କ ସଂଳାପ- "ଆଉ ପ୍ରଶ୍ନ କରନି, ଯୋଶେଫ୍ । ମୁଁ ଆଜି ହାରିଯାଇଛି । ଏ କଳେବର ନେଇ ମୁଁ ଆଉ କେବେ ସେ ଈଶ୍ୱର ନିବାସକୁ ଯାଇପାରିବି ନାହିଁ । ହଁ, ଯୋଶେଫ୍ ତମେ ଆଉକେବେ ସେ ଈଶ୍ୱର ନିବାସରେ ପୂଜା ପାଉଥିବା ସେ ପଥର ମୂର୍ତ୍ତିଟା ପାଖକୁ ଆସିବ ନାହିଁ ।" ମଧ୍ୟରେ ଈଶ୍ୱରଙ୍କ ହୃଦୟର ବେଦନାକୁ ଅନୁଭବ କରି ହୋଇଥାଏ, ଯାହା କରୁଣ ରସର ଏକ ଚମତ୍କାର ଉଦାହରଣ ।

ନାଟକର ଦ୍ୱିତୀୟ ଦୃଶ୍ୟ ଓ ସପ୍ତମ ଦୃଶ୍ୟରେ ଦେବଦାସୀ ଏବଂ ମହାସେବକଙ୍କ ସଂଳାପରେ ଶୃଙ୍ଗାର ରସର ଅବତାରଣା ଦେଖିବାକୁ ମିଳେ । ଦ୍ୱିତୀୟ ଦୃଶ୍ୟରେ ଦେବଦାସୀ 'ସେବକ ମହାରାଜ' ବୋଲି ସମ୍ବୋଧନ କରିବାରୁ ମହାସେବକ କହିଛନ୍ତି ନା' ଲୀଳା, ବରଂ ନାଣ୍ଟୁ ବୋଲି ଡ଼ାକ । ଦେବଦାସୀ 'ନାଣ୍ଟୁ' ଡାକିଛି ଏବଂ ମହାସେବକ 'ଲୀଳା' ଉଚ୍ଚାରଣ କରି ପରସ୍ପରକୁ ଜଡ଼ାଇ ଧରିଛନ୍ତି । ସପ୍ତମ ଦୃଶ୍ୟରେ ଦେବଦାସୀ ମହାସେବକଙ୍କୁ କହିଛି- 'ଆଜି ଏତେ ଶୀଘ୍ର ପରାଜୟ ବରଣ କରିନେଲ ?' ମହାସେବକ-ଦେବଦାସୀ ଲୀଳାମୟୀଠାରୁ ପରାଜିତ ହେବାରେ ମଧ୍ୟ ଏକପ୍ରକାର ଆନନ୍ଦ ଅଛି । ଏହାପରେ ସେ ତନ୍ମୟ ହୋଇ ଦେବଦାସୀକୁ ଚାହିଁରହିବା ଏବଂ ଦେବଦାସୀ ଯେ... ଯେ ! ଆରେ କ'ଣ ଏତେ ତନ୍ମୟ ହୋଇ ଦେଖୁଛ ? ବାକ୍ୟ ମଧ୍ୟରେ ଶୃଙ୍ଗାର ରସର ଆଭାସ ସ୍ପଷ୍ଟ । ଏହିପରି ଭାବରେ ଦେଖିଲେ ନାଟ୍ୟକାର ଶ୍ରୀ ସାହୁ ତାଙ୍କ ନାଟକରେ ପ୍ରସଙ୍ଗାନୁରୋଧରେ ବିଭିନ୍ନ ରସର ଅବତାରଣା କରି ଦର୍ଶକଙ୍କୁ ମଞ୍ଚରେ ବାନ୍ଧିରଖିବାର ଯେଉଁ ପ୍ରଚେଷ୍ଟା କରିଛନ୍ତି, ତାହା ନିଶ୍ଚିତ ଭାବରେ ସଫଳ ହୋଇଛି ।

**ଶିଳ୍ପ ବିଧି :** - କୌଣସି ନାଟକର ଶିଳ୍ପବିଧି ଉପରେ ତାର ସଫଳତା ନିର୍ଭର କରିଥାଏ । ନାଟ୍ୟକାର ନାରାୟଣ ସାହୁ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଏହି ଶିଳ୍ପବିଧି ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଥିବା ଲକ୍ଷ୍ୟ କରାଯାଇପାରେ । ଏଠାରେ ସଂକ୍ଷେପରେ ସେହି ଶିଳ୍ପବିଧିର ବିଭିନ୍ନ ଦିଗ ସଂପର୍କରେ ଆଲୋଚନା କରାଯାଉଛି । ଏହାଦ୍ୱାରା ନାଟକର କଳାତ୍ମକ ମୂଲ୍ୟ ଯେ ବୃଦ୍ଧିପାଇଛି ଏକଥା ଅସ୍ୱୀକାର କରାଯାଇନପାରେ ।

**ଚରିତ୍ର :** – ଚରିତ୍ର ନାଟକର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ବିନା ଚରିତ୍ରରେ ନାଟକ ମଞ୍ଚରେ ମଞ୍ଚସ୍ଥ ହେବା ସମ୍ଭବ ନୁହେଁ । ଯଦି ନାଟକର ଚରିତ୍ର ନାଟକର ଘଟଣାକ୍ରମକୁ ଅଗ୍ରଗତି କରାଇବାରେ ଅସମର୍ଥ ହେବେ, ତେବେ ତା'ର ନାଟ୍ୟମୂଲ୍ୟ ହ୍ରାସ ପାଇବ । ଏଣୁ ନାଟ୍ୟକାର ଚରିତ୍ରମାନଙ୍କ ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଥା'ନ୍ତି । 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଚରିତ୍ରମାନଙ୍କର ସଂଖ୍ୟା ସର୍ବମୋଟ ଏଗାର । ମେରୀ ଓ ଦେବଦାସୀ – ଦୁଇଜଣ ନାରୀ ଚରିତ୍ର । ଈଶ୍ୱର ନାଟକର ମୁଖ୍ୟ ଚରିତ୍ର । ଏଠାରେ ଈଶ୍ୱର ଗୋଟେ କାଳ୍ପନିକ ରୂପ । ଯେକୌଣସି ଧର୍ମର ପ୍ରତୀକିତ ରୂପ ସେ ହୋଇପାରନ୍ତି । ଇସଲାମ୍ ଧର୍ମ, ଖ୍ରୀଷ୍ଟଧର୍ମ ବା ହିନ୍ଦୁଧର୍ମରେ ଆଲ୍ଲା ହୁଅନ୍ତୁ ବା ଖ୍ରୀଷ୍ଟ ହୁଅନ୍ତୁ ବା ଜଗନ୍ନାଥ ଅଥବା ଅନ୍ୟ ଯେକୌଣସି ଦେବତା ହୁଅନ୍ତୁ, ସମସ୍ତେ ଈଶ୍ୱର ମଧ୍ୟରେ ସମାବିଷ୍ଟ । ପ୍ରତ୍ୟେକ ଧର୍ମର ମୂଳକଥା ଏକ । ମାନବ ଧର୍ମ ହିଁ ସବୁଠାରୁ ଶ୍ରେଷ୍ଠ ଧର୍ମ । ପ୍ରତ୍ୟେକ ଧର୍ମରେ ଏହି ମାନବିକତା ଉପରେ ହିଁ ଗୁରୁତ୍ୱାରୋପ କରାଯାଇଥାଏ । ସବୁ ଧର୍ମର ମୂଳ ଉଦ୍ଦେଶ୍ୟ ଏକ ହୋଇ ମଧ୍ୟ ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ଗୁରୁଦ୍ୱାରକୁ ନେଇ ପୃଥିବୀରେ ଅନେକ ରକ୍ତାକ୍ତ ସଂଘର୍ଷ ହୋଇଯାଇଛି । ନାଟକରେ ତେଣୁ ଈଶ୍ୱର ଏକ ଅସହାୟ ଚରିତ୍ର । ନିଜ ସେବକ ମଣିଷ ଦ୍ୱାରା ସେ ଅବହେଳିତ । ତାଙ୍କ ଭକ୍ତ ତାଙ୍କ ଜାଣତରେ ଧର୍ଷିତା ହୁଏ । ସମର୍ପିତା ଦେବଦାସୀ ସେବକ ସହିତ ଅନୈତିକ ସଂପର୍କ ରଖେ । ଯେଉଁ ଘର ଦିନେ ଈଶ୍ୱର ନିବାସ ରୂପେ ପରିଚିତ ଥିଲା, ସେହି ନିବାସରୁ ତାଙ୍କୁ ନିର୍ବାସନ କରିବାକୁ ସେବକ ଧମକ ଦିଏ । ତାଙ୍କ ନାମରେ ମିଥ୍ୟା ଅପବାଦ ସୃଷ୍ଟି କରେ । ଶେଷ ପର୍ଯ୍ୟନ୍ତ ସେ କାହାକୁ ରକ୍ଷା କରି ପାରୁନାହାନ୍ତି । ନାଟକର ପ୍ରଥମ ଦୃଶ୍ୟାରମ୍ଭରୁ ଈଶ୍ୱର ଚରିତ୍ର ଏକ କମେଡ଼ି ଚରିତ୍ର ରୂପେ ଦର୍ଶକ ସମ୍ମୁଖରେ ଉପସ୍ଥିତ ହୁଅନ୍ତି ଖେଳ ଦେଖାଇବା ନିମିତ୍ତ । ପରେ ସେ ଜଣେ ବିଶେଷ ଚରିତ୍ର ହୋଇପଡ଼ନ୍ତି ନାଟକରେ । ନାଟକର ଶେଷ ପର୍ଯ୍ୟନ୍ତ ସେ କେବଳ ବିଫଳତାକୁ ହିଁ ଭେଟି ଚାଲିଥା'ନ୍ତି ।

ନାଟକରେ ଓସ୍ତାଦ୍ ଚରିତ୍ର ସୂତ୍ରଧରର କାର୍ଯ୍ୟ କରିଛି । ପ୍ରଥମ ଦୃଶ୍ୟ ଓ ଶେଷ ଦୃଶ୍ୟରେ ତା'ର ଆବିର୍ଭାବ । ନାଟକର ବିଷୟ ସଂପର୍କରେ ସୂଚନା ଦେଇ ପରଦାର ଅନ୍ତରାଳକୁ ଚାଲିଯାଇଛି ଏବଂ ନାଟକର ଶେଷରେ ଆବିର୍ଭୂତ ହୋଇ ଈଶ୍ୱରଙ୍କ ସଂପର୍କରେ ସମ୍ବାଦ ପରିବେଷଣ କରି ନାଟକର ପରିସମାପ୍ତି ଘଟାଇଛନ୍ତି । ନାଟକ ମଧ୍ୟରେ ତାଙ୍କର ଅନ୍ୟ କୌଣସି ଭୂମିକା ନାହିଁ । 'ସମୟ' ମଧ୍ୟ ସେହିପରି କାଳ୍ପନିକ ଚରିତ୍ରଟିଏ । ବର୍ତ୍ତମାନର ଈଶ୍ୱର ବିଶ୍ୱାସ ପ୍ରତି ତା' ମନରେ ଅନେକ ସନ୍ଦେହ । ସବୁକାଳରେ ସମୟ ରହିଥାଏ । ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ଏକ

ଅଖଣ୍ଡ ରେଖାଟିଏ, ଭବିଷ୍ୟତରେ ମଧ୍ୟ ଆସିବାର ସମ୍ଭାବନା ରଖେ । ସମୟ ବିଦ୍ରୋହୀ ଅନେକ ପ୍ରଶ୍ନ ତା'ମନରେ । ଧର୍ମକୁ ନେଇ, ଈଶ୍ୱରଙ୍କ ସ୍ଥିତିକୁ ନେଇ ସେ ପ୍ରତିକ୍ରିୟାଶୀଳ । ମଣିଷର ସଂକୀର୍ଣ୍ଣ ଚିନ୍ତାଧାରା ତା' ମନରେ ଈଶ୍ୱରଙ୍କ ସ୍ଥିତିକୁ ନେଇ ଅନେକ ସନ୍ଦେହ ସୃଷ୍ଟି କରିଛି । ପୁରାଣ ଓ ଇତିହାସରୁ ଏକାଧିକ ଉଦାହରଣ ଦେଇ ଈଶ୍ୱରଙ୍କ ସ୍ଥିତିକୁ ବ୍ୟଙ୍ଗୋକ୍ତି କରିଛି । ଧର୍ମ ଏକ ଅଫିମ ନିଶା ବୋଲି ତା'ର ପ୍ରତ୍ୟୟ ହୋଇଛି । ଭୋପାଳ ଗ୍ୟାସ୍ ଦୁର୍ଘଟଣାରେ ନିଜର ଆଖି ଓ ଏକମାତ୍ର କନ୍ୟାକୁ ହରାଇଥିବା ଦୁଃଖୀ ଚରିତ୍ରଟିଏ ଯୋଶେଫ୍ । ଧର୍ମକ୍ଷେତ୍ରରେ ବିଶେଷ ଉଦାର । ପତ୍ନୀ ମେରୀ ପ୍ରତି ଅଶେଷ ଭଲପାଇବା ରହିଛି । ଭାକ୍ତିକ ବିଶ୍ୱାସ ନେଇ ସେ ଆସିଛି ଈଶ୍ୱରଙ୍କ ନିକଟକୁ ପତ୍ନୀଙ୍କ ସହିତ । ଜାତି ଓ ଧର୍ମର ଦ୍ୱାହି ଦେଇ ମହାସେବକ ଈଶ୍ୱର ଦର୍ଶନରୁ ତାକୁ ବଞ୍ଚିତ କରିଛି ଓ ତା' ପତ୍ନୀ ମେରୀକୁ ଧର୍ଷଣ କରି ହତ୍ୟା କରିଛି । ପତ୍ନୀ ହରାଇ ମ୍ରିୟମାଣ ଯୋଶେଫ୍ ସୁଲେମାନର ପ୍ରରୋଚନାରେ ଚରିତ୍ରହୀନ ମହାସେବକ ବିରୋଧରେ ନିର୍ବାଚନରେ ପ୍ରଚାର କରିଛି । ଶାନ୍ତ ସରଳ ମଣିଷଟିଏ ସମୟ ଓ ପରିସ୍ଥିତିର ଚକ୍ରରେ ବିପ୍ଳବୀରେ ରୂପାନ୍ତରିତ ହୋଇଛି । ସୁଲେମାନ ପ୍ରଥମରୁ ବିପ୍ଳବୀ । ତଥାକଥିତ ଧର୍ମଧ୍ୱଜାଧାରୀଙ୍କ ପ୍ରତି ବିମୁଖ ଏହି ଚରିତ୍ର ସମାଜରେ ବିପ୍ଳବ ଆଣିବାକୁ ସ୍ୱପ୍ନ ଦେଖିଛି । ଧର୍ମକୁ ନେଇ ବ୍ୟକ୍ତିଗତ ଫାଇଦା ଉଠାଉଥିବା ଏବଂ ରାଜନୀତି କରୁଥିବା ମହାସେବକମାନଙ୍କ ବିରୋଧରେ ନିର୍ବାଚନ ରଣାଙ୍ଗନରେ ଉପସ୍ଥିତ ହୋଇଛି । ନିଜ ଉପରୁ ବିଶ୍ୱାସ ହରାଇଥିବା ଯୋଶେଫ୍ ମନରେ ଭରିଦେଇଛି ପ୍ରେରଣା । କ୍ଷଣିକ ପାଇଁ ତା'ର ଆବିର୍ଭାବ ହେଲେ ହେଁ ସମାଜ ପାଇଁ ରହିଛି ଏହି ଚରିତ୍ରଟିର ଏକ ନିର୍ଦ୍ଦିଷ୍ଟ ବାର୍ତ୍ତା । ରାଜା ଚରିତ୍ର ମଧ୍ୟ ଜଣେ ଅସହାୟ ଚରିତ୍ର । କ୍ଷମତା ଯିବା ପରେ ସରକାରଙ୍କ ଦୟାରେ ବଞ୍ଚିଥିବା ନାମକୁ ମାତ୍ର ରାଜା ନିଜ ଇଚ୍ଛାରେ କିଛି କରିବାକୁ ସମ୍ପୂର୍ଣ୍ଣ ଅସମର୍ଥ । କେବଳ ଅବସୋସ ଭିତରେ ବଞ୍ଚିବା ହିଁ ସତେ ଯେମିତି ତାଙ୍କର ଭବିତବ୍ୟ । ପ୍ରଶାସକ ମଧ୍ୟ ଅସହାୟ । ସମସ୍ତ ଅନ୍ୟାୟ ଜାଣି ମଧ୍ୟ ମହାସେବକଙ୍କ ବିରୋଧରେ କୌଣସି ପଦକ୍ଷେପ ନେବାର ସାହସ ତାର ନାହିଁ । ମହାପୂଜକ କେବଳ ପରାମର୍ଶ ଦିଅନ୍ତି । ସେ ମଧ୍ୟ ସ୍ୱାଧୀନ ଭାବରେ କୌଣସି କାର୍ଯ୍ୟାନୁଷ୍ଠାନ କରିବାରେ ଅସମର୍ଥ । ମହାସେବକ ନାଟକର ଏକ ଗୁରୁତ୍ୱପୂର୍ଣ୍ଣ ଖଳ ଚରିତ୍ର । ନିଜ କ୍ଷମତା ଓ ପଦବୀର ସେ ସର୍ବଦା ଅମର୍ଯ୍ୟାଦା କରିଛି । ଚରିତ୍ରହୀନ, କାମୁକ ଓ ଉଦ୍ଧତ ଚରିତ୍ର ଭାବରେ ନାଟକକୁ ଗତିଶୀଳ କରାଇବାରେ ସେ ପ୍ରମୁଖ ଭୂମିକା ଗ୍ରହଣ କରେ । ମେରୀର ସତୀତ୍ୱ ଅପହରଣ କରି ହତ୍ୟା କରିଛି । ଯୋଶେଫ୍‌କୁ ଅଣହିନ୍ଦୁ କହି ଈଶ୍ୱରନିବାସରେ ପ୍ରବେଶ

କରାଇ ଦେଇନାହିଁ । ଦେବଦାସୀ ସହିତ ଅବୈଧ ସମ୍ପର୍କ ରଖିଛି । ଈଶ୍ୱରଙ୍କ ଉପସ୍ଥିତିକୁ ଅସ୍ୱୀକାର କରିଛି ଏବଂ ଶେଷରେ ଲୋକମାନଙ୍କର ସରଳ ବିଶ୍ୱାସ ପ୍ରତି ପ୍ରତାରଣା କରିଛି । ନିଜକୁ ଈଶ୍ୱର ସେବକ କହି ରାଜନୀତି ବୈତରଣୀ ପାର ହେବାକୁ ଚେଷ୍ଟା କରିଛି । ଜଣେ ଧୂର୍ତ୍ତ, ଶଠ ଓ ଚରିତ୍ରହୀନ ଚରିତ୍ର ଭାବରେ ନାଟକରେ ତାର ରହିଛି ଏକ ସ୍ୱତନ୍ତ୍ର ପରିଚିତି । ମେରୀ - ସରଳା ନାରୀଟିଏ ଯିଏ ଭୋପାଳ ଗ୍ୟାସ୍ ଦୁର୍ଘଟଣାରେ ସବୁଦିନ ପାଇଁ ମାତୃତ୍ୱ ହରାଇ ବସିବା ସହିତ ଏକମାତ୍ର କନ୍ୟାସନ୍ତାନକୁ ହରାଇଛି । ଅନେକ ବିଶ୍ୱାସ ନେଇ ଈଶ୍ୱରଙ୍କ ନିକଟକୁ ଆସିଛି ତାଙ୍କର ଆଶୀର୍ବାଦ ପାଇଁ । ଈଶ୍ୱରଙ୍କ ଆଶୀର୍ବାଦ ଲାଭ କଲେ ସେ ପୁଣି ମା' ହୋଇ ପାରିବ - ଏପରି ଏକ ଗଭୀର ବିଶ୍ୱାସ ରହିଛି ତା' ମନରେ । ଅଥଚ ଏହି ସରଳତା ଓ ଈଶ୍ୱର ବିଶ୍ୱାସ ପାଇଁ ମହାସେବକଙ୍କ ଦ୍ୱାରା ଧର୍ଷିତା ହୋଇ ପ୍ରାଣ ବିସର୍ଜନ କରିଛି । ଦର୍ଶକଙ୍କ ସମ୍ବେଦନା ଲାଭକରିବାକୁ ଚରିତ୍ରଟି ସମର୍ଥା । ଦେବଦାସୀ ଚରିତ୍ରର ଅସହାୟତା ଓ ଦୁଃଖ ଦର୍ଶକଙ୍କୁ ସମ୍ବେଦନଶୀଳ କରାଏ । ଈଶ୍ୱରଙ୍କ ପ୍ରତି ସମର୍ପିତା ଏହି ନାରୀ ମହାସେବକର ଚଟୁଳ ବକ୍ତବ୍ୟରେ ନିଜର ସ୍ଥିତି ଭୁଲି ତା' ସହିତ ସଂପର୍କ ସ୍ଥାପନ କରିଛି । ସେ ଜଣେ ନାରୀ ଏବଂ ନାରୀ ସୁଲଭ ସମସ୍ତ ଦୁର୍ବଳତା ତା' ମଧ୍ୟରେ ରହିଛି । ସେ ସୀମନ୍ତିନୀ ହେବାକୁ ଚାହିଁଛି । ମହାସେବକ ଚରିତ୍ରର କଳା ଦିଗଟିକୁ ଜାଣି ସାରିବା ପରେ ସେ ତା'ଠାରୁ ଦୂରେଇ ଯାଇଛି । ମେରୀ ଚରିତ୍ରରେ ଯେପରି ରହିଛି ମାତୃସୁଲଭ ଦୁର୍ବଳତା, ସେହିପରି ଦେବଦାସୀ ଚରିତ୍ରରେ ରହିଛି ଏକ ନାରୀସୁଲଭ ଭାବାଳୁତା । ମୋଟାମୋଟି କହିଲେ ନାଟ୍ୟ ବର୍ଣ୍ଣିତ ଚରିତ୍ରଗୁଡ଼ିକ ନିଜର ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିଛନ୍ତି । ତେଣୁ ସେଇଥିପାଇଁ ଚରିତ୍ରଗୁଡ଼ିକ ବେଶ୍ ସଜୀବ ଜଣାଯାଇଥା'ନ୍ତି ।

**ମଞ୍ଚ :** - ନାଟକ ଏକ ପ୍ରଦର୍ଶନଶୀଳ କଳା । ନାଟକ ପ୍ରଦର୍ଶନ ନିମିତ୍ତ ଆବଶ୍ୟକ ହୋଇଥାଏ ମଞ୍ଚ । ମଞ୍ଚ ଉପରେ ନାଟକ ମଞ୍ଚସ୍ଥ ହୋଇଥାଏ । କୌଣସି ନାଟକର ମଞ୍ଚମୂଲ୍ୟ ନଥିଲେ, ତାହା ନାଟକ ହୋଇ ପାରିବ ନାହିଁ । ଏଥିପାଇଁ ବହୁ ଉଚ୍ଚକୋଟୀର ସାହିତ୍ୟିକମାନଯୁକ୍ତ ନାଟକ ସାର୍ଥକ ନାଟକ ହୋଇପାରିନାହିଁ । 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର'ର ମଞ୍ଚମୂଲ୍ୟ ଉପରେ ପ୍ରଶ୍ନବାଚୀ ଉଠିନପାରେ । ଏହା ମଞ୍ଚରେ ଅଭିନୀତ ହୋଇଛି ଏବଂ ସଫଳତା ପାଇଛି ମଧ୍ୟ । ନାଟ୍ୟକାର ପ୍ରଚ୍ଛଦ ପଟରେ ରହି ତା'ର ମାନସ ସନ୍ତାନକୁ ମଞ୍ଚ ଉପରକୁ ଛାଡ଼ିଥାଏ । ଏହି ନାଟକଟି ଯେକୌଣସି ଖୋଲା ମଞ୍ଚରେ ଅଭିନୀତ ହୋଇପାରିବ । ଏଥିପାଇଁ କୌଣସି ନିର୍ଦ୍ଦିଷ୍ଟ ସେଟ୍‌ର ଆବଶ୍ୟକତା ନାହିଁ । ନାଟକଟିକୁ ସମୁଦାୟ ଛରୋଟି

ଜୋନ୍‌ରେ ବିଭକ୍ତ କରାଯାଇପାରେ । ପ୍ରଥମ ଜୋନ୍‌ଟି ଯେକୌଣସି ସ୍ଥାନ ହୋଇପାରେ । ଦ୍ୱିତୀୟ ଜୋନ୍‌ଟି ହେଉଛି ଈଶ୍ୱରଙ୍କ ନିବାସର ମୁଖଶାଳା । ତୃତୀୟ ଜୋନ୍ ରାଜାଙ୍କ ବୈଠକଖାନା ଏବଂ ଚତୁର୍ଥ ଜୋନ୍ ହେଉଛି ଦେବଦାସୀ ଲୀଳାମୟୀର ବାସଭବନ । ନାଟକରେ ଏମିତି କୌଣସି ଦୃଶ୍ୟ ନାହିଁ, ଯାହା ମଞ୍ଚସ୍ଥ ହେବାରେ ଅସୁବିଧା ହେବ । ଏକକାଳୀନ ମାତ୍ର ୨/୩ଟି ଚରିତ୍ରର ଆବିର୍ଭାବ ଘଟେ ମଞ୍ଚରେ । ଏହି ଦୃଷ୍ଟିରୁ ବିଚାର କଲେ ନାଟକଟିର ମଞ୍ଚମୂଲ୍ୟ ନିଶ୍ଚିତ ଭାବରେ ରହିଛି ।

**ପ୍ରତୀକାତ୍ମକତା :** – ନାଟକରେ ପ୍ରତୀକ ପ୍ରୟୋଗ ସମ୍ପ୍ରତି ବେଶ୍ ଗୁରୁତ୍ୱ ପାଇଛି । ଜୀବନର ବିଭିନ୍ନ ଅନୁଭବକୁ ପ୍ରଭାବଶାଳୀ ବ୍ୟଞ୍ଜନା ମାଧ୍ୟମରେ ପ୍ରକାଶ କରିବାକୁ ହେଲେ ପ୍ରତୀକର ଆବଶ୍ୟକତା ରହିଛି । ଏହି ପ୍ରତୀକ ଅମୂର୍ତ୍ତକୁ ମୂର୍ତ୍ତ କରିଥାଏ । ପ୍ରତୀକ ମାଧ୍ୟମରେ ଭାବଗତ ସଂପର୍କ ସ୍ଥାପିତ ହୋଇଥାଏ । ଅନେକ କଥାକୁ ସଂକ୍ଷେପରେ ପ୍ରକାଶ କରିବା କ୍ଷେତ୍ରରେ ପ୍ରତୀକ ହେଉଛି ଏକ ବଳିଷ୍ଠ ମାଧ୍ୟମ୍ । 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଚରିତ୍ରମାନଙ୍କଠାରୁ ଆରମ୍ଭ କରି ପରିବେଶ ପରିକଳ୍ପନା ପର୍ଯ୍ୟନ୍ତ ଅନେକ କ୍ଷେତ୍ରରେ ପ୍ରତୀକର ବ୍ୟବହାର କରାଯାଇଅଛି । ନାଟକର ନାମକରଣ ମଧ୍ୟ ପ୍ରତୀକାତ୍ମକ । ଏଠାରେ ଈଶ୍ୱର ପ୍ରକୃତ ଅର୍ଥରେ କୌଣସି ନିର୍ଦ୍ଦିଷ୍ଟ ଦେବତାଙ୍କ ଉଦ୍ଦେଶ୍ୟରେ ବ୍ୟବହାର କରାଯାଇନାହିଁ । ଏହି ଈଶ୍ୱର ଯେକୌଣସି ବ୍ୟକ୍ତି ହୋଇପାରନ୍ତି, ଯାହାଙ୍କର ସ୍ଥିତି ବିପନ୍ନ । ପୁଣି 'ଈଶ୍ୱର' ଶବ୍ଦଟି ସର୍ବଧର୍ମର ସମନ୍ୱୟ ଅର୍ଥରେ ପ୍ରତୀକାତ୍ମକ ରୂପେ ବ୍ୟବହୃତ । ଆଲ୍ଲା, ଖ୍ରୀଷ୍ଟ ଏବଂ ଶ୍ରୀଜଗନ୍ନାଥ ବା ଅନ୍ୟ କୌଣସି ଦେବତା ସମ୍ପ୍ରତି ନିଜ ବାସଭବନରୁ ବିତାଡ଼ିତ । ଧାର୍ମିକ ଅସହିଷ୍ଣୁତା ଆଜି ଈଶ୍ୱରଙ୍କ ଉପରେ ପ୍ରଶ୍ନବାଚୀ ଉଠାଇଛି । ନାଟ୍ୟକାର ନାମକରଣରେ ଏହି ପ୍ରତୀକର ବ୍ୟବହାର କରିଛନ୍ତି । 'ମେରୀ' ସର୍ବକାଳୀନ ନାରୀ ଚରିତ୍ରର ପ୍ରତୀକ, ଯାହାର ହୃଦୟ ମଧ୍ୟରେ ସନ୍ତାନଟିଏ ପାଇଁ ଅଶେଷ ବ୍ୟାକୁଳତା । ଏହି ବ୍ୟାକୁଳତା କେବଳ ମେରୀ ଚରିତ୍ରର ନୁହେଁ, ପ୍ରତ୍ୟେକ ମା' ଚରିତ୍ରର ଏହା ହିଁ ହେଉଛି ଚାରିତ୍ରିକ ବୈଶିଷ୍ଟ୍ୟ । ଦେବଦାସୀ ଚରିତ୍ର ମଧ୍ୟରେ ଯେକୌଣସି ନାରୀର ସ୍ୱାଭାବିକ ପ୍ରବୃତ୍ତିକୁ ଲକ୍ଷ୍ୟ କରାଯାଇପାରେ । ଈଶ୍ୱରଙ୍କ ପ୍ରତି ସମର୍ପିତା ହେଲେ ହେଁ ଦେବଦାସୀ ଲୀଳାମୟୀ କାମନା ବାସନାର ଉର୍ଦ୍ଧ୍ୱରେ ନୁହେଁ । ନିର୍ଦ୍ଦିଷ୍ଟ ବୟସରେ ନାରୀଟିଏ ଚାହେଁ ପୁରୁଷର ସାନ୍ନିଧ, ସେ ଯେଉଁ ସ୍ତରରେ ଥାଉନା କାହିଁକି । ସେହି ଦୃଷ୍ଟିରୁ ଯଦି ମେରୀ ସାର୍ବକାଳିକ ଏକ ମାତା ଚରିତ୍ରର ପ୍ରତୀକ ହୁଏ, ତେବେ ଦେବଦାସୀ ଲୀଳାମୟୀ ହେବ ସାର୍ବକାଳିକ ପ୍ରବୃତ୍ତି ପରିଚାଳିତ ନାରୀର ପ୍ରତୀକ । ଅନୁରୂପ ଭାବେ ମହାସେବକ ଯେକୌଣସି କାମୁକ ବା ଲମ୍ପଟ ପୁରୁଷର ପ୍ରତୀକାତ୍ମକ ରୂପ ହୋଇପାରେ । ରାଜା ହୋଇପାରନ୍ତି କ୍ଷମତା ହରାଇଥିବା

ଯେକୌଣସି ଅସହାୟ ମଣିଷର ପ୍ରତୀକ । 'ସମୟ' କାଳର ପ୍ରତୀକ, ଯିଏ ତାର ଅଖଣ୍ଡ ପ୍ରବାହରେ ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ସଂଘଟିତ ଘଟଣାବଳୀକୁ ଦର୍ଶକଙ୍କ ସମ୍ମୁଖରେ ତୋଳି ଧରିଥାଏ ।

ବିଭିନ୍ନ ଦୃଷ୍ଟିରୁ ବିଚାର କଲେ, ଏହି ନାଟକରେ ପ୍ରତୀକ ବିଭିନ୍ନ କ୍ଷେତ୍ରରେ ବ୍ୟବହୃତ ହୋଇଛି, ଯାହା ନାଟକର କଳାତ୍ମକ ମୂଲ୍ୟ ବୃଦ୍ଧିରେ ସହାୟତା କରିଥାଏ ।

**ସଂଳାପ :-** ସଂଳାପ ନାଟକର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଭାବ । ସଂଳାପ ମାଧ୍ୟମରେ ନାଟ୍ୟ ବର୍ଣ୍ଣିତ ଚରିତ୍ରଗୁଡ଼ିକ ବ୍ୟକ୍ତ ହୋଇଥା'ନ୍ତି । ନାଟକକୁ ଗତିଶୀଳ କରିବା କ୍ଷେତ୍ରରେ ଏହାର ଭୂମିକା ଅତୀବ ମହତ୍ତ୍ୱପୂର୍ଣ୍ଣ । ନାଟ୍ୟକାର ସଂଳାପ ମାଧ୍ୟମରେ ଚରିତ୍ରମାନଙ୍କ ମୁଖରେ ନିଜର ବକ୍ତବ୍ୟ ବା ଉଦ୍ଦେଶ୍ୟ ପ୍ରକାଶ କରିଥା'ନ୍ତି । ଚରିତ୍ରକୁ ଏହା ଦୃଶ୍ୟ ଦିଗରେ ଆଗେଇ ନେବା ସହିତ ଭବିଷ୍ୟତ ଘଟଣା ପାଇଁ ମାର୍ଗଟିଏ ପ୍ରସ୍ତୁତ କରିଥାଏ । ସଂଳାପ ସର୍ବଦା ପାତ୍ରମୁଖୀ ହେବା ଆବଶ୍ୟକ । ନଚେତ୍ ସଂଳାପର ସଜୀବତା ଆସିପାରିବ ନାହିଁ । 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର'ର ଚରିତ୍ରଗୁଡ଼ିକ ମୁଖରେ ଯେଉଁ ସଂଳାପମାନ ଦିଆଯାଇଛି, ତାହା ସମ୍ପୂର୍ଣ୍ଣ ରୂପେ ପାତ୍ରାନୁକୂଳ । ଓସ୍ତାଦ୍ ଚରିତ୍ରଟି ସୂତ୍ରଧରର ଭୂମିକା ନିର୍ବାହ କରିଛି । ତାର ଚରିତ୍ର ଗାଉଁଲୀ ଚରିତ୍ର । ତେଣୁ ତା' ମୁଖରେ ଶୁଦ୍ଧ ଭାଷା ସଂଯୋଜନା ନାଟକର ନାଟକତ୍ୱକୁ ଖର୍ବ କରିବାର ସମ୍ଭାବନା ନଥିବାରୁ ତା' ପାଇଁ ଦେଶଜ ଶବ୍ଦର ବ୍ୟବହାର କରାଯାଇଛି । ଯେପରି - "ଭାଇମାନେ, ମା'ମାନେ, ମଉସା, ମାଉସୀମାନେ । ତେମେ ଆପଣଙ୍କୁ ୟେ ଓସ୍ତାଦ୍‌ର ପ୍ରଣାମ୍ । ଆରେ ୟେ ଇଶରା, ବାବୁମାନଙ୍କୁ ଟିକେ ପ୍ରଣାମ କର ।"

ଧର୍ମ ସଂପର୍କରେ ଈଶ୍ୱର ସମ୍ପୂର୍ଣ୍ଣ ଭାବରେ ନିରପେକ୍ଷ ଥିଲେ ହେଁ, ଲୋକମାନଙ୍କର ସଂକୀର୍ଣ୍ଣ ଧାରଣା ତାଙ୍କୁ ଦୁଃଖ ଦେଇଛି । ସେଥିପାଇଁ ସମୟର ପ୍ରଶ୍ନର ଉତ୍ତର ଦେଇ ଈଶ୍ୱର କହିଥିଲେ - "ସ୍ୱାର୍ଥରେ ଅନ୍ଧ ମଣିଷ ମତେ ଖୋଜୁ ଥିଲା ମନ୍ଦିର ଓ ମସଜିଦ୍ ଭିତରେ । ହେଲେ ମୋର ସ୍ଥାନ ଉପାସନା ମନ୍ଦିର ନୁହେଁ, ବ୍ୟକ୍ତିର ହୃଦୟ କନ୍ଦର । ନିହିତ ସ୍ୱାର୍ଥ ଯୋଗୁଁ ମଣିଷକୁ ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ଗୁରୁଦ୍ୱାର ସବୁ ଅଲଗା ଅଲଗା ଦେଖାଯାଉଥିଲା ।" ମହାସେବକ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଅଧିବାସୀ । ସେହି ଅଞ୍ଚଳର ଭାଷା ତା' ମୁଖରେ ସ୍ଥାନ ପାଇଛି । ଯେପରି - "ହଇହେ, ପଇସାଟିଏ ତ ଝଡ଼ିବାକୁ ନାହିଁ । କାହିଁକି ଗହଳି କରୁଛ ?" ମହାସେବକ ଏକ ଖଳ ଚରିତ୍ର । ସେଥିପାଇଁ ତା'ମୁଖରେ ଔଦ୍ଧତ୍ୟପୂର୍ଣ୍ଣ ସଂଳାପ ଶୋଭାପାଇଥାଏ । ନାଟ୍ୟକାର ଈଶ୍ୱରଙ୍କ ମୁଖରେ ତା' ଚରିତ୍ରର ପ୍ରକୃତ ସ୍ୱରୂପ ପ୍ରକାଶ କରିବା ପରେ ଏବଂ ନିଜ କୃତକର୍ମ ପାଇଁ ଅନୁତପ୍ତ ନୁହେଁ ବୋଲି କହିବାରୁ ମହାସେବକ କ'ଣ କହିଛି ଥରେ ଶୁଣନ୍ତୁ -

"ମହାସେବକ - ସେ ପ୍ରଶ୍ନ ପଚାରିବାକୁ ଅଧିକାର ତମକୁ ଦେଲା କିଏ ? ଈଶ୍ୱର ନିବାସର ପ୍ରତିଟି କର୍ମ ମୋ ଦ୍ୱାରା ନିୟନ୍ତ୍ରିତ । ମୁଁ ଈଶ୍ୱରଙ୍କ ପ୍ରତିନିଧି ମୋର ପ୍ରତ୍ୟେକଟି ଆକାଂକ୍ଷା ହିଁ ଈଶ୍ୱର ନିବାସର ଅଲିଖିତ ସମ୍ବିଧାନ ।"

ମେରୀ ଜଣେ ନାରୀ । ନାରୀର ନାରୀତ୍ୱ ମାତା ହେବାରେ । ଭୋପାଳ ଗ୍ୟାସ ଦୁର୍ଘଟଣାରେ ନିଜର ସନ୍ତାନକୁ ହରାଇବା ପରେ ସେ ଆଉ ଥରେ ମାତା ହୋଇ ସେହି ଦୁଃଖ ଭୁଲିବାକୁ ଚାହିଁଛି । ମାତ୍ର ଯୋଶେଫ୍ ମୁଖରୁ ଡାକ୍ତରଙ୍କ ରିପୋର୍ଟରେ ତା'ର ମା' ହେବାର ସମ୍ଭାବନା ନଥିବା ଶୁଣିବାରୁ ଗୋଟିଏ ନାରୀର ବ୍ୟାକୁଳ ହୃଦୟ ନେଇ ପଚାରିଛି -

'ମେରୀ - ସତ କୁହ, ମୋ ରାଣ । ଡାକ୍ତର ରିପୋର୍ଟରେ କ'ଣ ବାହାରିଛି ? ସତ କୁହ, ମୁଁ କ'ଣ ଆଉ କେବେ ମା' ହୋଇପାରିବିନି ? କୁହ ।'

ଏହିପରି ଦେଖିଲେ ଏହି ନାଟକରେ ସଂଳାପଗୁଡ଼ିକ ପାତ୍ରମୁଖୀ ହୋଇଥିବାରୁ ତାହା ବାସ୍ତବ ଓ ବଳିଷ୍ଠ ହୋଇପାରିଚି ।

**ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା** – କୁହାଯାଏ ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା ନାଟକର ପ୍ରାଣ । କାରଣ ଏହି ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା ଶେଷ ପର୍ଯ୍ୟନ୍ତ ଦର୍ଶକଙ୍କୁ ବାନ୍ଧି ରଖିଥାଏ ତାର ମାୟା ଜାଲରେ । ଦ୍ୱନ୍ଦ୍ୱ ଦୁଇପ୍ରକାରର – ବହିଃର୍ଦ୍ୱନ୍ଦ୍ୱ ଓ ଅନ୍ତଃର୍ଦ୍ୱନ୍ଦ୍ୱ । ବହିଃର୍ଦ୍ୱନ୍ଦ୍ୱ ମୁଖ୍ୟତଃ ପରିବେଶ ସହିତ ଚରିତ୍ରର ବା ଚରିତ୍ର ସହିତ ଚରିତ୍ର କ୍ଷେତ୍ରରେ ଦେଖାଯାଉଥିବାବେଳେ ଅନ୍ତର୍ଦ୍ୱନ୍ଦ୍ୱ ମଣିଷର ମାନସିକ ସ୍ତରରେ ସଂଘଟିତ ହୋଇଥାଏ । ଏଥିରେ ମଣିଷର ମନସ୍ତତ୍ତ୍ୱ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଉତ୍କଣ୍ଠା ପାଠକ ବା ଦର୍ଶକକୁ କୌଣସି ନାଟକର ପରବର୍ତ୍ତୀ ଘଟଣା ପାଇଁ ଆଗ୍ରହ ସୃଷ୍ଟି କରାଇଥାଏ । ଅନ୍ୟ ଭାବରେ କହିଲେ ନାଟକର ବିଷୟବସ୍ତୁ ମଧ୍ୟରେ ଆଗ୍ରହ ସୃଷ୍ଟି କରିବା କ୍ଷେତ୍ରରେ ଉତ୍କଣ୍ଠାର ଭୂମିକା ବିଶେଷ ଭାବରେ ଗୁରୁତ୍ୱପୂର୍ଣ୍ଣ । କେବଳ ଏହି ଉତ୍କଣ୍ଠା ପାଇଁ ଦର୍ଶକ ନାଟକର ପରିଣତି ପର୍ଯ୍ୟନ୍ତ ଅପେକ୍ଷା କରିଥାଏ ।

ନାଟ୍ୟକାର ନାରାୟଣ ସାହୁ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଚମତ୍କାର ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା ସୃଷ୍ଟି କରି ଦର୍ଶକମାନଙ୍କୁ ଶେଷ ପର୍ଯ୍ୟନ୍ତ ନାଟକର କାହାଣୀ ମଧ୍ୟରେ ବାନ୍ଧି ରଖିପାରିଛନ୍ତି । ଏହି ନାଟକଟି ଯେଉଁ ସ୍ଥାନରେ ଅଭିନୀତ ହୋଇଛି, ଶେଷ ପର୍ଯ୍ୟନ୍ତ ଦର୍ଶକ ମନୋଯୋଗ ସହକାରେ ଉପଭୋଗ କରିଛନ୍ତି । ପ୍ରଥମ ଦୃଶ୍ୟରୁ ଓସ୍ତାଦ୍ ଦର୍ଶକମାନଙ୍କ ମଧ୍ୟରେ ଉତ୍କଣ୍ଠା ସୃଷ୍ଟି କରିବାକୁ ପ୍ରୟାସ ଜାରି ରଖିଛନ୍ତି । ଈଶ୍ୱରଙ୍କୁ ବିଭିନ୍ନ ପ୍ରଶ୍ନ ପଚାରିବା ମାଧ୍ୟମରେ ପରବର୍ତ୍ତୀ ଦୃଶ୍ୟ ପାଇଁ ଉତ୍କଣ୍ଠିତ ବାତାବରଣଟିଏ ସୃଷ୍ଟି କରିଛନ୍ତି । ବିଶିଷ୍ଟ ରାଜନେତାଙ୍କ ନାମୋଚ୍ଚାରଣ ମାଧ୍ୟମରେ ଏମାନେ କାହିଁକି ଏଠାକୁ ଆସିଛନ୍ତି ବୋଲି ପଚାରିଛି

ଓ ଏହି କାହିଁକିର ଉତ୍ତର ପାଇବା ପାଇଁ ଦର୍ଶକ ପରବର୍ତ୍ତୀ ଦୃଶ୍ୟ ପାଇଁ ଅପେକ୍ଷା କରିବାକୁ ବାଧ୍ୟ ହୋଇଥାଏ ।

ଦ୍ୱିତୀୟ ଦୃଶ୍ୟରେ ସୂତ୍ରଧରର କାର୍ଯ୍ୟ କରୁଥିବା ଓସ୍ତାଦ୍‌ଙ୍କର ପୁଣି ଆବିର୍ଭାବ ଘଟେ । ସେ ଦର୍ଶକମାନଙ୍କୁ ଦିଅଁ-ଦେବତା-ଦେବାଳୟକୁ ନେଇ କ'ଣ ସବୁ ଘଟିଯାଉଛି ଏବଂ ବର୍ତ୍ତମାନ ସମୟରେ କ'ଣ ଘଟିଛି ତଥା ଘଟିବାକୁ ଯାଉଛି ସେ ସଂପର୍କରେ ସୂଚନା ଦେବାକୁ ନାଟକର ଚରିତ୍ରମାନଙ୍କ ମାଧ୍ୟମରେ ଚେଷ୍ଟା କରିଛନ୍ତି । ଆଗାମୀ ଦିନରେ କ'ଣ ଘଟିବାର ସମ୍ଭାବନା ଅଛି ସେ ସମ୍ବନ୍ଧରେ ଜାଣିବାକୁ ଦର୍ଶକ ମନରେ ସ୍ୱତଃ ଆଗ୍ରହ ସୃଷ୍ଟି ହୋଇଥାଏ । ସେ ସମୟରେ ସଂଘଟିତ ଏକ ଦାରୁଣ ଘଟଣା – ଭୋପାଳ ଗ୍ୟାସ୍ ଦୁର୍ଘଟଣା ବିଷୟରେ ଦୃଶ୍ୟାରମ୍ଭ ହୋଇଛି । ଯୋଶେଫ ଓ ମେରୀ ଯେଉଁମାନେ ଗ୍ୟାସ୍ ଦୁର୍ଘଟଣାରେ ନିଜର ସନ୍ତାନ ସହିତ ଆଖି ଏବଂ ମାତୃତ୍ୱ ହରାଇଥିଲେ ସେହିମାନେ ଘଟଣାଟିକୁ ବର୍ଣ୍ଣନା କରିଛନ୍ତି ଦର୍ଶକଙ୍କ ସମ୍ମୁଖରେ । ଏହାପରେ ଏହି ଦମ୍ପତିଙ୍କ ପରବର୍ତ୍ତୀ କାହାଣୀ କ'ଣ ହେବ ସେ ସମ୍ପର୍କରେ ଜାଣିବାକୁ ଦର୍ଶକ ଅପେକ୍ଷା କରିରହନ୍ତି । ତୃତୀୟ ଦୃଶ୍ୟରେ ଦେବଦାସୀର ନୃତ୍ୟପରିବେଷଣ, ରାଜା, ପ୍ରଶାସକ, ମହାପୂଜକ ଏବଂ ମହାସେବକଙ୍କ ସମ୍ମୁଖରେ । ସମସ୍ତେ ନୃତ୍ୟ ଉପଭୋଗ ସହିତ ଦେବଦାସୀଙ୍କୁ ପ୍ରଶଂସା କରିଛନ୍ତି । ଦେବଦାସୀର ପ୍ରସ୍ଥାନ ପରେ ଈଶ୍ୱରଙ୍କ ସେବା ପାଇଁ ସରକାରଙ୍କ ଅନୁଦାନ ସମ୍ପର୍କରେ ଆଲୋଚନା, ବିଭିନ୍ନ ଅବ୍ୟବସ୍ଥା ସମ୍ପର୍କରେ ସୂଚନା ତଥା ରାଜାଙ୍କ ଅସହାୟତାକୁ ଦର୍ଶକ ଭେଟେ ଏହି ଦୃଶ୍ୟରେ । ଚତୁର୍ଥ ଦୃଶ୍ୟରେ ଦେବଦାସୀ ଓ ମହାସେବକଙ୍କ ସମ୍ପର୍କର ଅଧ୍ୟାୟକୁ ଦର୍ଶକ ଦେଖେ ଉତ୍କଣ୍ଠାର ସହିତ । ମନରେ ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା ଦେବତାଙ୍କ ଉଦ୍ଦେଶ୍ୟରେ ସମର୍ପିତା ଲୀଳାମୟୀ (ଦେବଦାସୀ) ସତରେ କ'ଣ ମହାସେବକର ବାହୁବନ୍ଧନରେ ଧରା ଦେବ ? ଉଭୟଙ୍କ ଆଲିଙ୍ଗନକୁ ଦର୍ଶକ ପ୍ରତ୍ୟକ୍ଷ କରିଥିଲେ ପରବର୍ତ୍ତୀ ଦୃଶ୍ୟରେ ପରିଣତି କ'ଣ ହେବ, ସେଥିପାଇଁ ଅପେକ୍ଷା କରେ । ପଞ୍ଚମ ଦୃଶ୍ୟରେ ମହାସେବକ ସହିତ ମେରୀ ଓ ଯୋଶେଫ୍‌ର ସାକ୍ଷାତ, ଈଶ୍ୱର ଦର୍ଶନ ପାଇଁ ଅନୁରୋଧ, ଖ୍ରୀଷ୍ଟିଆନ ହୋଇଥିବାରୁ ମହାସେବକର ନାସ୍ତିବାଣୀ, ଯୋଶେଫ୍‌ର ପ୍ରତିବାଦ, ମେରୀର ଅନୁରୋଧ ଓ ଶେଷରେ କେବଳ ମେରୀକୁ ଦର୍ଶନ କରାଇ ଦେବାର ପ୍ରତିଶ୍ରୁତି ଦେଇ ନିଜ ସହିତ ନେଇଯିବାବେଳେ ବାସ୍ତବରେ ଦର୍ଶକ ପ୍ରାଣରେ ଉତ୍କଣ୍ଠା ସୃଷ୍ଟି ହୋଇଥାଏ । ଯେଉଁ ମହସେବକ କିଛି ସମୟ ପୂର୍ବରୁ ନାସ୍ତିବାଣୀ ଶୁଣାଇଥିଲା, ବର୍ତ୍ତମାନ ତାର ମତ ପରିବର୍ତ୍ତନ ପଛରେ କେଉଁ କାରଣ ବିଦ୍ୟମାନ । ଉତ୍କଣ୍ଠିତ ଦର୍ଶକ ପରବର୍ତ୍ତୀ ଦୃଶ୍ୟରେ ରାଜା ଓ ଈଶ୍ୱରଙ୍କ କଥୋପକଥନରୁ ଜାଣିବାକୁ ପାଏ

ମେରୀର ଧର୍ଷଣ ଓ ମୃତ୍ୟୁର ସମ୍ବାଦ । ଈଶ୍ୱର ଓ ରାଜାଙ୍କ ଅସହାୟତା ଯେପରି ଦର୍ଶକଙ୍କୁ ହତାଶ କରେ ମେରୀର ମୃତ୍ୟୁ ସେହିପରି ଦୁଃଖିତ କରେ । ମହାସେବକ କିପରି ଦଣ୍ଡିତ ହେବ କିମ୍ବା ନିଜ କ୍ଷମତା ଓ ପଦବୀ ବଳରେ ଖସିଯିବ, ତା'ର ପରିଣତି ଜାଣିବାକୁ ଅପେକ୍ଷା କରେ ଦର୍ଶକ । ସପ୍ତମ ଦୃଶ୍ୟରେ ଦେବଦାସୀ ଓ ମହାସେବକଙ୍କ ବାକ୍ୟାଳାପ, ଦେବଦାସୀଙ୍କ ବିବାହ ପାଇଁ ପ୍ରସ୍ତାବ, ମହାସେବକର ଚତୁରତାର ସହିତ ପ୍ରତ୍ୟାଖ୍ୟାନ ଓ ଶେଷରେ ମହାସେବକଙ୍କୁ ନିଜ ଗୃହର ଦରଜାବନ୍ଦ ଘୋଷଣା ଦର୍ଶକଙ୍କୁ ଆନନ୍ଦ ପ୍ରଦାନ କଲେ ହେଁ, ମେରୀ ହତ୍ୟାର ପରିଣତି କ'ଣ ହେବ - ସେହି ଦ୍ୱନ୍ଦ୍ୱରୁ ଦର୍ଶକ ମୁକ୍ତ ହୋଇନଥାଏ । ଅଷ୍ଟମ ଦୃଶ୍ୟରେ ଈଶ୍ୱରଙ୍କ ସହିତ ଗଭୀର ରାତ୍ରିରେ ମହାସେବକଙ୍କ ସାକ୍ଷାତ, ପରସ୍ପର ମଧ୍ୟରେ ଯୁକ୍ତି ଏବଂ ମହାସେବକର ଈଶ୍ୱରଙ୍କୁ ଧମକ ଦର୍ଶକ ପ୍ରାଣରେ ସ୍ୱତଃ ପ୍ରତିକ୍ରିୟା ସୃଷ୍ଟି କରିଥାଏ । ନବମ ଦୃଶ୍ୟରେ ମହାପୂଜକ, ରାଜା, ପ୍ରଶାସକଙ୍କ ସ୍ୱପ୍ନ ବୃତ୍ତାନ୍ତ ସମ୍ପର୍କରେ ଆଲୋଚନା, ଖଳନାୟକ ମହାସେବକର ମେରୀ ମୃତ୍ୟୁର ଦୋଷ ଈଶ୍ୱରଙ୍କ ମୁଣ୍ଡରେ ଲଦି ଦେଇ ଚତୁରତାର ସହିତ ଖସିଯିବା ଦର୍ଶକମାନଙ୍କୁ ହତାଶ କରିଥାଏ । ଦଶମ ଦୃଶ୍ୟରେ ଈଶ୍ୱରଙ୍କର ମେରୀ ଶବକୁ ଯୋଶେଫ୍‌କୁ ପ୍ରତ୍ୟାର୍ପଣ, ଏକାଦଶ ଦୃଶ୍ୟରେ ଭାଙ୍ଗିପଡ଼ିଥିବା ଯୋଶେଫ୍ ମନରେ ସୁଲେମାନର ଉତ୍ସାହ ପ୍ରଦାନ ଏବଂ ଆଗାମୀ ନିର୍ବାଚନରେ ମହାସେବକଙ୍କୁ ପରାଜିତ କରିବାକୁ ଯୋଜନା ପ୍ରସ୍ତୁତି, ଦ୍ୱାଦଶ ଦୃଶ୍ୟରେ ନିର୍ବାଚନ ରଣାଙ୍ଗନରେ ମହାସେବକ ଓ ସୁଲେମାନ ନିଜ ସପକ୍ଷରେ ପ୍ରଚାର, ଯୋଶେଫ୍‌ର ମହାସେବକ ଚରିତ୍ର ସମ୍ପର୍କରେ ସୂଚନା, ଆରମ୍ଭ ହୋଇଛି ସଂଘର୍ଷ, ଈଶ୍ୱରଙ୍କ ପ୍ରବେଶ ଓ ସମସ୍ତଙ୍କର ତାଙ୍କୁ ଦୋଷାରୋପ, ଅଯୋଧ୍ୟାଠାରେ ରାମ ମନ୍ଦିର ଶିଳାନ୍ୟାସ କାର୍ଯ୍ୟକ୍ରମରେ ଦଙ୍ଗାକୁ ନେଇ ଉଭୟ ଗୋଷ୍ଠୀଙ୍କ ଈଶ୍ୱରଙ୍କୁ ପ୍ରହାର, ଆହତ ଈଶ୍ୱରଙ୍କୁ ତ୍ୟାଗ କରି ଅନ୍ୟମାନଙ୍କର ସ୍ଥାନ ତ୍ୟାଗ । ତ୍ରୟୋଦଶ ଦୃଶ୍ୟରେ ସମୟ ଓ ଈଶ୍ୱରଙ୍କ କଥୋପକଥନରେ ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ସଂଘଟିତ ହୋଇଥିବା ବିଭିନ୍ନ ଘଟଣା ଓ ସାମ୍ପ୍ରତିକ ଦଙ୍ଗା ବିଷୟରେ ଉଲ୍ଲେଖ କରି ଦର୍ଶକମାନଙ୍କୁ ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ନେଇ ଆସନ୍ତି ତଥା ତା'ରି ମାଧ୍ୟମରେ ବର୍ତ୍ତମାନର ବିଖଣ୍ଡିତ ସମୟକୁ ପାଠକ/ଦର୍ଶକମାନଙ୍କ ସମ୍ମୁଖରେ ତୋଳି ଧରନ୍ତି । ଈଶ୍ୱରଙ୍କ ଏହି ଅସହାୟ ସ୍ଥିତି ସମ୍ପର୍କରେ ସୂଚନା ଦେବାକୁ ଶେଷ ଦୃଶ୍ୟରେ ଓସ୍ତାଦର ଆବିର୍ଭାବ । ଏହି ଖେଳର ଶେଷ ପାଇଁ ଅପେକ୍ଷା କରିବାକୁ ଦର୍ଶକମାନଙ୍କୁ ଅନୁରୋଧ । କାରଣ ମୁଖ୍ୟ ଖେଳାଳୀ ଈଶ୍ୱର ଆହତ । ନାଟକର ଶେଷ ପର୍ଯ୍ୟନ୍ତ ଦର୍ଶକ ଦ୍ୱନ୍ଦ୍ୱ ଓ ଉତ୍କଣ୍ଠାରେ ଅପେକ୍ଷା କରିଥା'ନ୍ତି ଶେଷ ପରିଣତି ଜାଣିବା ପର୍ଯ୍ୟନ୍ତ । ଓସ୍ତାଦ୍‌ଙ୍କ ଘୋଷଣା ତଥାପି ଦର୍ଶକଙ୍କ ଉତ୍କଣ୍ଠାର ପରିସମାପ୍ତି ଘଟାଇ ନଥାଏ । ନାଟକୀୟ ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା ଏହି

ନାଟକଟିକୁ ଯେ ଚମତ୍କାର କ୍ଲାଇମ୍ୟାକ୍ସ ପ୍ରଦାନ କରିଛି, ଅସ୍ୱୀକାର କରାଯାଇନପାରେ ।

**ନାଟକର ସାମାଜିକ ବାର୍ତ୍ତା :**

କଳା ବା ସାହିତ୍ୟର ଉଦ୍ଦେଶ୍ୟ କେବଳ ମନୋରଞ୍ଜନ ନୁହେଁ । ମନୋରଞ୍ଜନ ସହିତ କିଛି ଶିକ୍ଷା ପ୍ରଦାନ କରିବା ମଧ ତା'ର ଅନ୍ୟତମ ଉଦ୍ଦେଶ୍ୟ । ଅର୍ଥାତ୍ ପ୍ରତ୍ୟେକ କଳାସୃଷ୍ଟିର ଏକ ସାମାଜିକ ଉଦ୍ଦେଶ୍ୟ ରହିଛି । ଏହାକୁ ସାମାଜିକ ବାର୍ତ୍ତା ବା ସୋସିଆଲ୍ ମେସେଜ୍ କୁହାଯାଇପାରେ । ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକରେ ଏହି ସାମାଜିକ ବାର୍ତ୍ତା ଅତ୍ୟନ୍ତ ପ୍ରଭାବଶାଳୀ । ନାଟକର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଜାତି, ଧର୍ମ, ବର୍ଣ୍ଣ ଓ ଲିଙ୍ଗ ନିର୍ବିଶେଷରେ ମଣିଷକୁ ମଣିଷ ଭାବରେ ଦେଖିବା । 'ବସୁଧୈବ କୁଟୁମ୍ବକମ୍'- ଏହାହିଁ ହେଉଛି ଭାରତୀୟ ସଂସ୍କୃତିର ଆଦର୍ଶ । ଧର୍ମ, ଜାତି ଓ ଲିଙ୍ଗକୁ ନେଇ ମଣିଷ ମଣିଷ ମଧରେ କୌଣସି ଫାଟ ସୃଷ୍ଟି ହେବା ଅନୁଚିତ୍ । ସମସ୍ତେ ଈଶ୍ୱରଙ୍କ ସନ୍ତାନ । ହିନ୍ଦୁ, ମୁସଲମାନ, ଶିଖ୍,ଖ୍ରୀଷ୍ଟିଆନ୍, ଇହୁଦୀ ଆଦି ଭିନ୍ନ ଭିନ୍ନ ସମ୍ପ୍ରଦାୟ କେବଳ ଗୋଟିଏ ଗୋଟିଏ ପରିଚିତି ମାତ୍ର । ଖ୍ରୀଷ୍ଟ, ଆଲ୍ଲା, ଜଗନ୍ନାଥ - ଏମିତି ଅନେକ ଈଶ୍ୱରଙ୍କର ପରିକଳ୍ପନା କରାଯାଇଛି । ଏହି ପରିକଳ୍ପନା ମଣିଷର ମୂଢ଼ ବିଚାରଧାରା । ମଣିଷକୁ ନିଜ ସଂକୀର୍ଣ୍ଣ ଚିନ୍ତାଧାରାରୁ ଊର୍ଦ୍ଧ୍ୱକୁ ଉଠିବାକୁ ହେବ । ନଚେତ୍ ସମାଜରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସମ୍ଭବପର ନୁହେଁ । ନାଟକରେ ପରୋକ୍ଷରେ ଏ ବିଷୟ ସୂଚିତ ହୋଇଛି ।

ନାଟକର ଅନେକ ସ୍ଥଳରେ ମାନବିକ ସମ୍ବେଦନଶୀଳତାର ସ୍ୱର ଉଚ୍ଚାରିତ । ନିରୀହା ମେରୀ ସହିତ ଧୂର୍ତ୍ତ ମହାସେବକର ଆଚରଣ କୌଣସି ସଭ୍ୟ ସମାଜରେ ଆଦୌ ଗ୍ରହଣୀୟ ନୁହେଁ । ସେହିପରି ଭୋପାଳ ଗ୍ୟାସ୍ ଦୁର୍ଘଟଣାରେ କ୍ଷତିଗ୍ରସ୍ତ ଲୋକଙ୍କୁ ସହାୟତା ନାମରେ ଯେପରି ପ୍ରବଞ୍ଚିତ କରାଗଲା, ବାସ୍ତବରେ ତାହା ଦୁଃଖଦାୟକ । ଆମ ମଣିଷପଣିଆ ସମ୍ପ୍ରତି କିପରି ନିମ୍ନମୁଖୀ ହୋଇଚାଲିଛି, ଏହା ତାହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ଅତୀତରେ ରାଜନୀତି ଥିଲା ସଂପୂର୍ଣ୍ଣ ଭାବରେ ମୂଲ୍ୟବୋଧଭିତ୍ତିକ । ପ୍ରଜାଶୋଷଣ ନୁହେଁ ପ୍ରଜା ତୋଷଣ ଥିଲା ରାଜନୀତିର ମୂଳ ଲକ୍ଷ୍ୟ । ସାମ୍ପ୍ରତିକ କାଳରେ ଏହାର ସଂଜ୍ଞା ବଦଳି ଯାଇଛି । ଅତୀତରେ ନୈତିକ ମୂଲ୍ୟବୋଧ ରହିଥିବା ଆଦର୍ଶ ବ୍ୟକ୍ତିତ୍ୱମାନେ ରାଜନୀତି କ୍ଷେତ୍ରକୁ ପ୍ରବେଶ କରୁଥିଲେ, ଯାହାପାଇଁ ରାଜନୀତିରେ ସ୍ୱଚ୍ଛତା ରହୁଥିଲା । ବର୍ତ୍ତମାନ ଆର୍ଥିକ ସ୍ୱଚ୍ଛଳ ଥିବା ନୀତିହୀନ, ଗୁଣ୍ଡା ଓ ଚରିତ୍ରହୀନ ବ୍ୟକ୍ତି ରାଜନୀତି ରଣାଙ୍ଗନାରେ ପ୍ରବେଶ କରି ଏହାକୁ କଳୁଷିତ କରିଦେଉଛନ୍ତି ।

ସମୂହ ନୁହେଁ ବା ଗୋଷ୍ଠୀ ନୁହେଁ, ବ୍ୟଷ୍ଟି ବା ବ୍ୟକ୍ତି ହୋଇଛନ୍ତି ମୁଖ୍ୟ । ଯାହାଦ୍ୱାରା ଭଦ୍ରବ୍ୟକ୍ତିମାନେ ରାଜନୀତି ମଇଦାନକୁ ପ୍ରବେଶ କରୁନାହାନ୍ତି । ମହାସେବକଙ୍କ ପରି ବ୍ୟକ୍ତି ହୋଇଛନ୍ତି ରାଜନୀତିର ପ୍ରଥମ ଧାଡ଼ିର ଲୋକେ ଯିଏ ନିଜ ସ୍ୱାର୍ଥ ପାଇଁ ଈଶ୍ୱରଙ୍କୁ ମଧ ତାଙ୍କ ଗୃହରୁ ବିତାଡ଼ିତ କରିପାରନ୍ତି । ନିଜ ପଦବୀର ଫାଇଦା ଉଠାଇ ସ୍ୱାର୍ଥ ସର୍ବସ୍ୱ ଜୀବନକୁ ଆପଣାର କରିନିଅନ୍ତି । ଏହି ନାଟକର ସେହି ଧୂର୍ତ୍ତ, କପଟୀ, ଚରିତ୍ରହୀନ, ସ୍ୱାର୍ଥପର ବ୍ୟକ୍ତିମାନଙ୍କ ମୁଖା ଖୋଲିଦେବାର ପ୍ରୟାସ ହୋଇଛି । ସମାଜକୁ ସଚେତନ କରାଇ ଦିଆଯାଇଛି ଏହିପରି ବ୍ୟକ୍ତିବିଶେଷଙ୍କ ଚରିତ୍ରକୁ ଅନୁଧ୍ୟାନ କରି ନିଜର ମୂଲ୍ୟବାନ ମତାମତ ପ୍ରଦାନ କରିବାକୁ ।

ନାଟକରେ ଅନେକତ୍ର ଇତିହାସର ପୁନର୍ମୂଲ୍ୟାୟନ କରାଯାଇଛି । ଅତୀତକୁ ଅନ୍ଧଭାବରେ ଗ୍ରହଣ କରିନେବାର ଆବଶ୍ୟକତା ନାହିଁ । ଅତୀତ ହୁଏତ ଗୋଟିଏ ପ୍ରେକ୍ଷାପଟ୍ଟ ହୋଇପାରେ । କିନ୍ତୁ ସେହି ମାନଦଣ୍ଡରେ ବର୍ତ୍ତମାନକୁ ପରୀକ୍ଷା କରିବା ଏକ ଐତିହାସିକ ଭ୍ରାନ୍ତି । ରାଜା, ଦେବଦାସୀ, ମହାପୂଜକ, ମହାସେବକ, ଈଶ୍ୱର ଆଦି ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମକୁ ପ୍ରତୀକିତ କରୁଥିଲେ ହେଁ, ବର୍ତ୍ତମାନର ଯେକୌଣସି କାଳ ଖଣ୍ଡରେ ସେମାନଙ୍କୁ ଭେଟାଯାଇପାରେ । ଯେକୌଣସି ମନ୍ଦିରକୁ ଗଲେ ମହାସେବକଙ୍କୁ ଦେଖିହୁଏ, ତାଙ୍କ ଆଚରଣ ଓ ଉଚ୍ଚାରଣରେ ଅତିଷ୍ଠ ହେବାକୁ ପଡ଼େ । ଦେବଦାସୀଙ୍କ ଅସହାୟତାରେ ମନ ଯନ୍ତ୍ରଣାକ୍ତ ହୁଏ । ନାଟକରେ ଏପରି ଚରିତ୍ରମାନଙ୍କର ବିଚିତ୍ର ସମାବେଶ ଘଟାଇ ନାଟ୍ୟକାର ବର୍ତ୍ତମାନର ମଣିଷକୁ ଏହି ବାର୍ତ୍ତା ପ୍ରେରଣ କରିଛନ୍ତି ଯେ, ଇତିହାସ କେବେ ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ବନ୍ଦୀ ହୋଇ ରହିପାରେ ନାହିଁ । ଇତିହାସ ମଧ ପୃଷ୍ଠା ଓଲଟାଏ ଓ ସେହି ପୃଷ୍ଠା ମଧ୍ୟରେ ବର୍ତ୍ତମାନ ଲିପିବଦ୍ଧ ରହିଥାଏ । ଅତୀତକୁ ବର୍ତ୍ତମାନର ଆଖି ନେଇ ପଢ଼ିବାକୁ ହେବ ଏବଂ ପରିବର୍ତ୍ତିତ ସମୟରେ ତାର ନବ ମୂଲ୍ୟାୟନ କରିବାକୁ ହେବ । ସାମାଜିକ ସଚେତନତା ନ ଆସିଲେ ସାମାଜିକ ପରିବର୍ତ୍ତନ ସମ୍ଭବ ନୁହେଁ । ତେଣୁ ନାଟ୍ୟକାର ବିଭିନ୍ନ ଚରିତ୍ରଙ୍କ କ୍ରିୟା-କଳାପ ଓ ଘଟଣା ପ୍ରବାହ ମାଧ୍ୟମରେ ବର୍ତ୍ତମାନର ପାଠକ ବା ଦର୍ଶକଙ୍କୁ ସଚେତନ କରାଇ ଦେବାର ପ୍ରୟାସ କରିଛନ୍ତି । ଏହି ଦୃଷ୍ଟିରୁ ବିଚାର କଲେ ଡକ୍ଟର ନାରାୟଣ ସାହୁଙ୍କର 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକଟିର ସାମାଜିକ ଦିଗ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ନିଶ୍ଚୟ ।

*- ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ*

# ପ୍ରଥମ ଦୃଶ୍ୟ

*(ମଞ୍ଚରେ ଆଲୋକ ଆସିବା ପରେ ଦେଖାଗଲା, ଓସ୍ତାଦ୍ ଯାଦୁକର ଭଳି ଗୋଟିଏ ସ୍ଥାନରେ ବସି ପୂଜା କରୁଥିଲେ । ପାଖରେ ଥିଲା ଗୋଟିଏ ଢୋଲ, ଗୋଟିଏ ଖପୁରୀ, ଗୋଟିଏ କାଉଁରୀ ହାଡ଼, କିଛି ଏଣ୍ଡୁତେଣ୍ଡୁ ଜିନିଷ । ତାଙ୍କ ଦୁଇପଟେ ନାଟକର ସମସ୍ତ ଚରିତ୍ର ଦେଖଣାହାରୀ ଭାବେ ଦଣ୍ଡାୟମାନ ଥିଲେ । ପୂଜା ସରିବା ପରେ ସେ ଉଠିଛନ୍ତି । ଲମ୍ବ ହୋଇ ଗୋଟାଏ ଫଟୋ ପାଖରେ ପଡିଛନ୍ତି । ସେତେବେଳେ ତାଙ୍କ ପାଟିରୁ ବାହାରୁଥାଏ - "ମା.... ଭବାନୀ ମା'... ତୋରି ଶରଣ" । ଓସ୍ତାଦ୍ ଉଠିଛନ୍ତି ଏବଂ ଢୋଲ ପିଟି ଚାଲିଛନ୍ତି । ଏଇ ଶବ୍ଦ ଭିତରେ ସମସ୍ତ ଚରିତ୍ର ମଞ୍ଚରୁ ଚାଲି ଯାଇଛନ୍ତି । କେବଳ ରହିଯାଇଛନ୍ତି ଈଶ୍ୱର । ସେ ଢୋଲର ଶବ୍ଦ ସହିତ ତାଳ ଦେଇ ନିଜର ଅଙ୍ଗଭଙ୍ଗୀ ଏବଂ ଖେଳ ଦେଖାଉଛନ୍ତି ।)*

ଓସ୍ତାଦ୍ - (ମଞ୍ଚର ସମ୍ମୁଖ ଭାଗକୁ ଆସି) ଭାଇମାନେ, ମା'ମାନେ, ମଉସା, ମାଉସୀମାନେ । ତେମେ ଆପଣଙ୍କୁ ଯେ ଓସ୍ତାଦ୍‌ର ପ୍ରଣାମ । ଆରେ ଯେ ଈଶରା ବାବୁମାନଙ୍କୁ ଟିକେ ପ୍ରଣାମ କର ।

ଈଶ୍ୱର - ହଉ ହେଲା ।

ଓସ୍ତାଦ୍ - ଆରେ ଟିକିଏ ଭଲ ଭାବେ ନମସ୍କାର କର ।

ଈଶ୍ୱର - ହେଲେ ଓସ୍ତାଦ୍, ଯେ ବାବୁମାନଙ୍କୁ ମୋର ଜମା ପ୍ରଣାମ କରିବାକୁ ଇଚ୍ଛା ହଉନି ।

ଓସ୍ତାଦ୍ - ଆରେ ତୁ ଯଦି ଖେଳ ଆରମ୍ଭରୁ ଏମିତି କରିବୁ, ସମସ୍ତେ ପଳେଇବେ । ଆମେ ଖାଇବା କ'ଣ ? ବଞ୍ଚିବା କେମିତି ?

ଈଶ୍ୱର - ସମସ୍ତେ ମୋତେ ଠକିଛନ୍ତି । କେହି ମୋ କଥା ବୁଝି ନାହାନ୍ତି । ଯାଗାକୁ ଯାଗା ବୁଲି ମୁଁ ଖେଳ ଦେଖେଇ ଚାଲିଛି । ହେଲେ ଏମାନେ... ।

ଓସ୍ତାଦ୍ - ଆରେ ତୁ ମୋଟେ ମନଦୁଃଖ କରନି । ଏମାନେ ଭାରି ଭଲ ଲୋକ । ତୋ କଥା ନିଶ୍ଚୟ ଶୁଣିବେ ।

ଈଶ୍ୱର - ହଉ ଓସ୍ତାଦ୍, ତୁ ଯେତେବେଳେ କହୁଛୁ, ତୋରି କଥା ମାନି ମୁଁ ଖେଳ ଆରମ୍ଭ କରୁଛି ।

ଓସ୍ତାଦ୍ - (ଓସ୍ତାଦ୍ ଢୋଲ ପିଟିଛନ୍ତି ଏବଂ କିଛି ସମୟ ପରେ) ଆରେ ଯେ ଇଶରା, ବାବୁଭାୟାମାନଙ୍କୁ ଖେଳ ଦେଖେଇବୁ ନା ଏମିତି ଭାଷଣ ଦେଇ ଚାଲିଥିବୁ ?

ଈଶ୍ୱର - ଦେଖେଇବା, ଓସ୍ତାଦ୍ ।

ଓସ୍ତାଦ୍ - କି ଖେଳ ?

ଈଶ୍ୱର - ଯାଦୁ ଖେଳ ।

ଓସ୍ତାଦ୍ - କି ଯାଦୁ ?

ଈଶ୍ୱର - ମନ୍ତର ଯାଦୁ ।

ଓସ୍ତାଦ୍ - କି ମନ୍ତର ?

ଈଶ୍ୱର - ଆଇଁଶି ମନ୍ତର କାଇଁଶି ମନ୍ତର ।

ଓସ୍ତାଦ - ଆଇଁଶି ମନ୍ତର... କାଇଁଶି ମନ୍ତର 'ହା'... ଆଇଁଶି ମନ୍ତର କାଇଁଶି ମନ୍ତର 'ହୁ'... ଆଇଁଶି ମନ୍ତର କାଇଁଶି ମନ୍ତର 'ହେ'... । (ଓସ୍ତାଦ୍

ଖପୁରୀଟି ହାତରେ ଧରିଛି । କିଛି ସମୟ ଖପୁରୀକୁ ଚାହିଁ ଏଣୁତେଣୁ ଅବୋଧ୍ୟ ମନ୍ତ୍ର ପଢିଛି । ତା'ପରେ ଖପୁରୀଟିକୁ ଈଶ୍ୱର ମୁହଁ ପାଖରେ ତିନିଥର ବୁଲାଇଛି ।) ଆରେ ଯେ ଇଶରା... ।

ଈଶ୍ୱର - ବୋଲ୍ ଓସ୍ତାଦ୍ ।

ଓସ୍ତାଦ୍ - ତା' ହେଲେ ଖେଳ ଦେଖେଇବା ?

ଈଶ୍ୱର - ହଁ ।

ଓସ୍ତାଦ୍ - କେମିତିକା ଖେଳ ?

ଈଶ୍ୱର - ନିତିଦିନିଆ ଖେଳ ।

ଓସ୍ତାଦ୍ - ଆରେ ସେଇଟା ପୁଣି କି ଖେଳ ?

ଈଶ୍ୱର - ଯୋଉ ଖେଳରେ ବାବୁଭାୟାମାନେ ଜଣେ ଜଣେ ଖେଳୁଆଡ୍ ।

ଓସ୍ତାଦ୍ - ମଉସା ମାଉସୀ, ବାବୁଭାୟାମାନେ । ଆପଣମାନେ ଭାବୁଥିବେ ଏମିତି ଇଆଡୁ ସିଆଡୁ କହି ଆମେ ଆପଣମାନଙ୍କୁ ଠକି ଦେବୁ । ନାଇଁ ଆଜ୍ଞା । ପେଟ ପାଇଁ ନାଟ । ନିଶ୍ଚୟ ଦେଖେଇବୁ । ଆପଣମାନଙ୍କ ବିଶ୍ୱାସ ଲାଗି ମୁଁ ଗୋଟାଏ କାମ କରୁଛି । (ଓସ୍ତାଦ୍ ଈଶ୍ୱରର ଆଖିରେ ଗୋଟାଏ ଗାମୁଛା ବାନ୍ଧି ଦେଇଛି । ଈଶ୍ୱର ଏଣେ ତେଣେ ବୁଲି ଝୁଣ୍ଟିଛି ଏବଂ ପଡିଛି । ପୁଣି ଉଠିଛି ।)

ଈଶ୍ୱର - ଓସ୍ତାଦ୍, ଆଖିଟା ବିନ୍ଧିଲାଣି ଖୋଲିଦେ ।

ଓସ୍ତାଦ୍ - ଯୋଉ ପର୍ଯ୍ୟନ୍ତେ ତୁ ବାବୁଭାୟାମାନଙ୍କ ପ୍ରଶ୍ନର ସମାଧାନ ନ କରିଛୁ, ସେ ପର୍ଯ୍ୟନ୍ତ ଏ ଅନ୍ଧପୁଟୁଳି ତୋ ଆଖିରେ ବନ୍ଧା ହୋଇଥିବ ।

ଈଶ୍ୱର - ହେଲେ ଓସ୍ତାଦ୍ -

ଓସ୍ତାଦ୍ - ଆରେ ଯେ ଈଶ୍ୱର ।

ଈଶ୍ୱର - ବୋଲ ଓସ୍ତାଦ୍ ।

ଓସ୍ତାଦ୍ - ଏଇ ବାବୁଟାରେ କ'ଣ ଅଛି !

ଈଶ୍ୱର - ଆଖିରେ ଚଷମା ।

ଓସ୍ତାଦ୍ - ସେଇ ବାବୁଟା ପାଖରେ ?

ଓସ୍ତାଦ୍ - ପକେଟରେ କଲମ ।

ଓସ୍ତାଦ୍ - ସେ ପିଲାଟି ପଛକୁ କାହିଁକି ଚାହୁଁଛି ?

ଈଶ୍ୱର - ବାଁପଟ ପଛରେ ସୁନ୍ଦରୀ ଝିଅଟିଏ ବସିଛି ।

ଓସ୍ତାଦ୍ - ଆଚ୍ଛା କହତ ମୋ ହାତରେ ଏଇଟା କ'ଣ ?

ଈଶ୍ୱର - ଗୋଟେ ଟଙ୍କା ।

ଓସ୍ତାଦ୍ - କହ ଏପଟେ କିଏ ବସିଛନ୍ତି ?

ଈଶ୍ୱର - ମିଷ୍ଟର୍ ଗାନ୍ଧୀ ।

ଓସ୍ତାଦ୍ - ସେପଟେ କିଏ ?

ଈଶ୍ୱର - ମିଷ୍ଟର୍ ସିଂହ ।

ଓସ୍ତାଦ୍ - ସାମ୍ନାରେ କିଏ ?

ଈଶ୍ୱର - ମିଷ୍ଟର୍ ଲାଲ୍ ମିଷ୍ଟର୍ ଆଡ଼ଭାନୀ ।

ଓସ୍ତାଦ୍ - ଆଚ୍ଛା କହତ ଦେଖି ଏମାନେ କାହିଁକି ଏଠିକି ଆସିଛନ୍ତି ? କାହିଁକି ଆସିଛନ୍ତି ? କାହିଁକି ? କାହିଁକି (ଈଶ୍ୱର ଘୂରିଛନ୍ତି ଖୁବ୍ ଜୋରରେ । ଧିରେ ପାଦ ତାଙ୍କର ଅବଶ ହୋଇ ଆସିଛି । ସେ ଟଳମଟଳ ହେଉଥିବା ଅବସ୍ଥାରେ ମଞ୍ଚର ଆଲୋକ ଧିରେ ଧିରେ ନିଷ୍ପ୍ରଭ ହୋଇଆସିଛି । ଏବଂ ଝାପ୍‌ସା ଅନ୍ଧାର ଭିତରେ ଦୂରରୁ ଭାସି ଆସିଛି ମସ୍‌ଜିଦ୍‌ରୁ "ଆଲ୍ଲା ହୋ.... ଆକବର...." ଧ୍ୱନି ସହିତ ମନ୍ଦିର ମଧ୍ୟରୁ "ଜୟ ସୀୟାରାମ୍... ଜୟ ସୀୟାରାମ୍" ଧ୍ୱନି ସହ Church Bellର ଶବ୍ଦ)

# ଦ୍ୱିତୀୟ ଦୃଶ୍ୟ

*(ମଞ୍ଚ ଅନ୍ଧକାର ରହିଛି । ଓସ୍ତାଦ୍‌ଙ୍କର ବାଦ୍ୟ - ବାଦନରେ ଧୀରେ ଧୀରେ ଅନ୍ଧକାର ଅପସରି ଯାଇଛି । ଓସ୍ତାଦ୍ ଆଗେଇ ଆସିଛନ୍ତି ମଞ୍ଚର ସମ୍ମୁଖ ଭାଗକୁ । ବାଦ୍ୟ ବାଦନ ସେତେବେଳକୁ ବନ୍ଦ ହୋଇଛି । ଏଥର ଓସ୍ତାଦ୍ ନିଜର ପାରମ୍ପରିକ ସର୍ମନ ପଢିବାକୁ ଆରମ୍ଭ କରିଛନ୍ତି ।)*

ଓସ୍ତାଦ୍ - ମା', ମାଉସୀ, ବାବୁଭାୟାମାନେ । ୟା' ଭିତରେ ଆପଣମାନେ ମୋ ଉପରେ ବିଗିଡ଼ି ଯାଇଥିବେ । ଭାବୁଥିବେ, ଖେଳ ନାଆଁରେ ମୁଁ ଆପଣମାନଙ୍କୁ ଭକୁଆ ବନେଇବାକୁ ଆସିଛି । ନାହିଁ, ଆଜ୍ଞା, ପଇସା ନେଇଛି ମାନେ ଖେଳ ନିଶ୍ଚିତ ଦେଖାଇବି । ଆପଣମାନେ ଜମା ହତାଶ ହୁଅନ୍ତୁ ନାହିଁ । ମଜାଦାର ଘଟଣା ଦେଖାଇବି । ତେବେ ମୋ ଖେଳ ଏଯାଏଁ ଆରମ୍ଭ ହେଇନି । ଯାହା ଦେଖିଲେ, ସେଇଟା କାଲି ଗୋଟାଏ 'ସୁରୁଆତ୍' ମାନେ 'ଆରମ୍ଭ' ମାତ୍ର ।

ଦିଅଁ-ଦେବତା-ଦେବାଳୟକୁ ନେଇ କଳି ଝଗଡ଼ା ପ୍ରାୟ ସବୁଦେଶରେ ଊଣା ଅଧିକେ ଚଳିଆସୁଛି । କେତେବେଳେ ଏଇ ଝଗଡ଼ା ଗୀତା ବାଇବେଲ୍‌କୁ ନେଇ ତ ପୁଣି କେତେବେଳେ ହିନ୍ଦୁ ମୁସଲମାନଙ୍କୁ ନେଇ । ଧର୍ମ ଧର୍ମ, ଜାତି ଜାତି ସବୁଠି ଏଇ

ପାଲା । ଏମିତି ଏକ ଘଟଣାରୁ ଆମର ଯେ ଆଖଡ଼ା ଆରମ୍ଭ ହୋଇଛି । ମନ୍ଦିର-ମସ୍‌ଜିଦ୍-ଗୀର୍ଜା-ଗୁରୁଦ୍ୱାର ଯେ କୌଣସି ଦେବାଳୟର ପରିସରକୁ ଆପଣମାନେ ଏଇ ଘଟଣାର ଜନ୍ମସ୍ଥଳୀ ବୋଲି ଧରି ନେଇପାରନ୍ତି । ତା'ହେଲେ ଆସନ୍ତୁ ଦେଖିବା ଯାହା ଯାହା ଘଟିଯାଇଛି ଏବଂ ଘଟିବାକୁ ଯାଉଛି.... । (ଓସ୍ତାଦ୍‌ଙ୍କର ବାଦ୍ୟ-ବାଦନ ସଙ୍ଗେ ସଙ୍ଗେ ଆଲୋକ ଈଷତ୍ ମଳିନ ପଡ଼ିଯାଇଛି । ପାତଳ ଅନ୍ଧାର ଭିତରେ ଶୁଭୁଛି ଗୀର୍ଜାର ଘଣ୍ଟି ଶବ୍ଦ ଏବଂ ଭାସି ଆସିଛି ଦୂର ଗୀର୍ଜାରୁ ଫାଦର୍‌ଙ୍କ କଣ୍ଠସ୍ୱର)

ଫାଦର୍ - (ଅନ୍ତରାଳରୁ) "ହେ ପରମପିତା, ଆପଣ ଏ ଅଧମ ସନ୍ତାନମାନଙ୍କୁ କ୍ଷମା କରିଦିଅନ୍ତୁ । ଆମେ ଯାହା କିଛି କରୁଛୁ ସବୁ ନିଜର ସ୍ୱାର୍ଥ ପାଇଁ । ସ୍ୱାର୍ଥର ବଶବର୍ତ୍ତୀ ହୋଇ ଆମେ ମଧ ବେଳେବେଳେ ଜାଣିଶୁଣି ଭୁଲ୍ କରି ବସୁଛୁ । ତେଣୁ ଆପଣଙ୍କ ପ୍ରଦର୍ଶିତ ମାର୍ଗ ଭୁଲିଯାଉଥିବାରୁ ଆମମାନଙ୍କୁ କ୍ଷମା କରିଦିଅନ୍ତୁ । ଅଧମ ସନ୍ତାନମାନଙ୍କୁ ଆଲୋକ ଦେଖାନ୍ତୁ ।" (ଆଲୋକ ଆସିଲା ବେଳକୁ ମଞ୍ଚ ଉପରେ ବିବ୍ରତ ଅବସ୍ଥାରେ ପଦଚାଳନା କରୁଛି ଯୋଶେଫ୍)

ଯୋଶେଫ୍ - ଫାଦର୍, ମୁଁ ସମସ୍ତଙ୍କୁ ବୁଝାଇ ପାରିବି । ହେଲେ ମେରୀକୁ କେମିତି କହିବି, ସିଏ ଆଉ ମା' ହୋଇପାରିବ ନାହିଁ । ୟୁନିଅନ୍ କାରବାଇଡ୍ ଗ୍ୟାସ୍ ସବୁଦିନ ପାଇଁ ତା'ଠାରୁ ମାତୃତ୍ୱ କାଢିନେଇଛି । ମୁଁ ପାରିବି ନାହିଁ... ମୁଁ ପାରିବି ନାହିଁ...।

ମେରୀ - (ପ୍ରବେଶ କରି) କ'ଣ ପାରିବ ନାହିଁ ?

ଯୋଶେଫ୍ - ଏଁ, କିଛି ନୁହେଁ ।

ମେରୀ - ତମେ ଏତେ ଶୀଘ୍ର ଫେରିଆସିଲ ? କ୍ଷତିପୂରଣ କଥା କ'ଣ ହେଲା ? ସମସ୍ତଙ୍କୁ ମିଳିବ ତ ?

ଯୋଶେଫ୍ - ଯଦି ଲର୍ଡ ଜେସସ୍ ନିଜେ ପୃଥିବୀକୁ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି, ତେବେ ବି ଭୋପାଳ ଗ୍ୟାସ୍ ଦୁର୍ଘଟଣାରେ କ୍ଷତିଗ୍ରସ୍ତ ଲୋକଙ୍କର ଦୁର୍ଦ୍ଦଶା ଦୂର ହୋଇପାରିବ ନାହିଁ ।

ମେରୀ - ହେ, ତମେ ସେମିତି କୁହନି । ପ୍ରଭୁ ଯୀଶୁ କରନ୍ତୁ । ସମସ୍ତଙ୍କ ଦୁଃଖ ଦୂର ହୋଇଯାଉ । (ଉଭୟ ଫ୍ରିଜ୍ ହୋଇଯାଇଛନ୍ତି ।

ଏଇ ସମୟରେ ଅନ୍ତରାଳରୁ ଭାସି ଆସିଛି ଯେ କୌଣସି ଧର୍ମର କିମ୍ବା ଭୀମଭୋଇଙ୍କର ଗୋଟିଏ ପଦ । ଗୀତ ପରେ ପରେ ଫ୍ରିଜ୍ ଅବସ୍ଥା କଟିଯିବ ।)

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ପାଉ ।"

ଯୋଶେଫ୍ - ସରକାର ଯେତିକି କ୍ଷତିପୂରଣ ଦେବାକୁ ଘୋଷଣା କରିଛନ୍ତି, ସେତକ ସମୁଦ୍ରକୁ ଶଙ୍ଖେ ପାଣି ।

ମେରୀ - ତା'ହେଲେ କେତେଦିନ ଏଠି ଏମିତି ସରକାରୀ ରିଲିଫ୍‌କୁ ଚାହିଁ ବଞ୍ଚି ରହିବା ?

ଯୋଶେଫ୍ - କ'ଣ କରିବି, କିଛି ଭାବି ପାରୁନି ।

ମେରୀ - ଆଜି ରହମତ୍ ମିଆଁ ତା' ଝିଅକୁ ନେଇ କଲୋନୀ ଛାଡ଼ି ସବୁଦିନ ପାଇଁ ଘରକୁ ଚାଲିଗଲା । ଗଲାବେଳେ ଫତିମା ଖୁବ୍ କାନ୍ଦୁଥିଲା । କାଲି ତ ନିଜ ଆଖିରେ ଦେଖିଲ, ଗୁରୁବଚନ୍ ସିଂହ କିପରି ପିଲାକବିଲା ନେଇ ତା' ମାଟିକୁ ଫେରିଗଲା ।

ଯୋଶେଫ୍ - ଗୋଟି ଗୋଟି ହେଇ ସମସ୍ତେ ଚାଲିଯିବେ । ଯେଉଁମାନେ ମରିଗଲେ, ସେମାନେ ସବୁ ବିପଦରୁ ତରିଗଲେ । ହେଲେ ଯେଉଁ ଅଭିଶପ୍ତ ମଣିଷ ଗୁଡ଼ାକ ବଞ୍ଚି ରହିଲେ, ସେମାନଙ୍କ ଭିତରୁ ଦୁଇଲକ୍ଷରୁ ଉର୍ଦ୍ଧ୍ୱ ଲୋକ ଶାରିରୀକ ବିକଳାଙ୍ଗ ହୋଇଯାଇଛନ୍ତି । ସରକାରୀ ହିସାବରେ ଦେଖାଯାଇଛି ମାତ୍ର ଚାଳିଶି ହଜାର । କାହାର ଆଖି ଯାଇଛି ତ କାହାର ଜରାୟୁ ଯାଇଛି । କାହାର କିଡ୍‌ନୀ ଅକାମୀ ତ କାହାର ଲିଭର ଅକାମୀ । କେତେଦିନ ସେମାନେ ମରଣ ସହିତ ସଂଗ୍ରାମ କରି ବଞ୍ଚିବେ ? ଓଃ.... Lord, forgive us ! forgive us !

ମେରୀ - ଯୋଶେଫ୍, ଆମେ ବି ଚାଲ ଗାଁକୁ ଫେରିଯିବା । କଲୋନୀରୁ ଅଧାଅଧି ଲୋକ ଚାଲିଗଲେଣି ।

ଯୋଶେଫ୍ - ହଁ, ମେରୀ ସେଇଆ କରିବା । ୟୁନିଅନ୍ କରାବାଇଡ୍ ମୋର ଗୋଟିଏ ଆଖିନେଇଛି । ହେଲେ ଆଉ ଗୋଟିଏ ଅଛି । ଦୁଇଟା ପେଟ ପାଇଁ ଦାନାର ଅଭାବ ହେବନି ।

ମେରୀ - ଯୋଶେଫ୍, ଡାକ୍ତର ତମ ଆଖି ବିଷୟରେ କ'ଣ କହିଲେ ?

ଯୋଶେଫ୍ - କ'ଣଟା ଆଉ କହିବେ । ସମସ୍ତଙ୍କର ଯାହା, ମୋର ବି ସେଇଆ ।

ମେରୀ - ୟେ, ଜାଣିଛ ନା' । ନଜ୍‌ମାଟା ଭାରି ମନ ଦୁଃଖ କରୁଛି । ତା' ସ୍ୱାମୀ ସାଙ୍ଗରେ ଡାକ୍ତରଖାନା ଯାଇଥିଲା । ଡାକ୍ତର କହିଲେ, ସିଏ ଆଉ ମା' ହୋଇପାରିବନି । ତା'ର ଦୁଇ ଦୁଇଟା ବଢିଲା ପିଲା ବାହୁଡ଼ିଗଲେ, ତଥାପି ବିଚାରୀ ଛାତିକୁ ପଥର କରି ପଡ଼ି ରହିଥିଲା । ହେଲେ ସେ ଡାକ୍ତରୀ ରିପୋର୍ଟଟା... ।

ଯୋଶେଫ୍ - ମେରୀ, ତୁମକୁ କିଏ କହୁଛି, ଯେତେସବୁ ବାଜେ କଥା ମୁଣ୍ଡରେ ପୂରାଇବାକୁ !

ମେରୀ - ପ୍ରଭୁ ଯୀଶୁ, ବିଚାରୀକୁ ବଞ୍ଚିବା ପାଇଁ ଧୈର୍ଯ୍ୟ ଦିଅ... ସାହସ ଦିଅ ।

ଯୋଶେଫ୍ - ଏକା ନଜ୍‌ମା ନୁହଁ । ହଜାର ହଜାର ନଜ୍‌ମା ଆଜି କ୍ଷତି ସହୁଛନ୍ତି ।

ମେରୀ - ମତେ ଆଉ ମୁହୂର୍ତ୍ତଟିଏ ବି ଏଠି ରହିବାକୁ ଭଲ ଲାଗୁନି ।

ଯୋଶେଫ୍ - ହଁ... ଫେରିବା ତ ନିଶ୍ଚୟ । ହେଲେ ମୁଁ ଭାବୁଛି ମମି କଥା । ଲୁରାକୁ ସେ ଖୁବ୍ ଭଲପାଉଥିଲା । ଯେତେବେଳେ ସେ ଲୁରାକୁ ଖୋଜିବସିବ, ମୁଁ ତାକୁ କି ଉତ୍ତରଦେବି ? ମୁଁ କ'ଣ କହିପାରିବି, ଭୋପାଳ ଗ୍ୟାସ ସବୁଦିନ ପାଇଁ ଲୁରାକୁ ଆମଠାରୁ ଛଡ଼େଇ ନେଇଛି ବୋଲି ?

ମେରୀ - ସବୁ ଦେହସୁହା ହୋଇଯିବ । ଆମେ ବାପା ମା' ହୋଇ ଯେତେବେଳେ ଛାତିକୁ ପଥର କରି ଏତେବଡ଼ କ୍ଷତିକୁ ସହିପାରିଲେ, ସିଏ ପାରିବେନି କାହିଁକି ?

ଯୋଶେଫ୍ - ୮୦ ବର୍ଷର ବୃଦ୍ଧାକୁ ମୁଁ କେମିତି ବୁଝେଇବି, ମେରୀ ଆଉ କେବେ ହେଲେ... ।

ମେରୀ - ନା' ତମେ ସେମିତି କୁହନା । ମୁଁ ସୁଇସାଇଡ୍ କରିଦେବି ।

ଯୋଶେଫ୍ - ମେରୀ !

ମେରୀ - ସତ କୁହ, ମୋ ରାଣ । ଡାକ୍ତର ରିପୋର୍ଟରେ କ'ଣ ବାହାରିଛି ? ସତ କୁହ, ମୁଁ କ'ଣ ଆଉ କେବେ ମା' ହୋଇପାରିବିନି ? କୁହ ।

ଯୋଶେଫ୍ - ମେରୀ, କିଏ କହିଲା, ତମେ ମା' ହୋଇପାରିବନି ? (ବିବ୍ରତ)

ମେରୀ - ତମେ କହିଲ ।

ଯୋଶେଫ - ମୁଁ କହିଲି ? ନାଁ ତ ... । ହଁ, ମେରୀ କୁହ ତ ମମି ପାଇଁ କ'ଣ ନେବା ?

ମେରୀ - ମତେ ଫାଙ୍କିବାକୁ ଚେଷ୍ଟାକରନି । କୁହ, ମୋ ରାଣ । ମେଡ଼ିକାଲ୍ ରିପୋର୍ଟରେ କ'ଣ ବାହାରିଲା ?

ଯୋଶେଫ୍ - ଆରେ କିଛି ଖରାପ ବାହାରିନି, ସାମାନ୍ୟ ଉଇକ୍‌ନେସ୍ । କିଛିଦିନ ଚିକିତ୍ସାରେ ରହିଲେ ଭଲ ହୋଇଯିବ ।

ମେରୀ - ମେରୀକୁ ତୁମେ ଲୁଚାଇବାକୁ ଚେଷ୍ଟା କରୁଚ ? କୁହ ମୋ ରାଣ । (ଯୋଶେଫ୍ ନିଶ୍ଚଳ ହୋଇଯାଇଛି) ତମେ କିଛି କହୁନା କାହିଁକି ? କୁହ...ପ୍ରଭୁ ଯୀଶୁଙ୍କ ରାଣ...

ଯୋଶେଫ୍ - ନା'... ମେରୀ ... ନା' ... ତମେ ଆଉ କେବେ ମା' ହୋଇପାରିବନି । (କୁଣ୍ଢାଇ ଧରିଛନ୍ତି ଯୋଶେଫ୍ ମେରୀକୁ । ଆଖିରୁ ବହିଯାଇଛି ଦୁଇଧାର ଲୁହ । ମଞ୍ଚ ଧୀରେ ଧୀରେ ଅନ୍ଧକାର ହୋଇଆସିଛି ।)

# ତୃତୀୟ ଦୃଶ୍ୟ

*(ରାଜାଙ୍କ ବୈଠକଖାନା । ବସିଥିଲେ ରାଜା, ପ୍ରଶାସକ ଏବଂ ମହାପୂଜକ ଓ ମହାସେବକ । ମଧ୍ୟଭାଗରେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ନୃତ୍ୟ ପ୍ରଦର୍ଶନ କରିଚାଲିଥିଲେ ଦେବଦାସୀ ।)*

ମହାପୂଜକ - ବାଃ, ସୁନ୍ଦର । ଅତି ସୁନ୍ଦର ।

ମହାସେବକ- ଚମତ୍କାର ! ଲୀଳାମୟୀର ଲୀଳା ଅତି ଚମତ୍କାର । (ମନେ ମନେ ହସି ଉଠୁଥିଲେ ରାଜା । ପ୍ରଶାସକ ମଧ୍ୟ ତାଙ୍କୁ ଅନୁସରଣ କରୁଥିଲେ ।)

ପ୍ରଶାସକ - ମହାରାଜା, ଆଜିର ନୃତ୍ୟ ସବୁଠୁ ବେଶି ରୋମାଞ୍ଚକର ହୋଇପାରିଛି ।

ରାଜା - ସବୁତ ସେହି ଈଶ୍ୱରଙ୍କ ମହିମା । (ନୃତ୍ୟ ସହିତ ସମତା ରକ୍ଷା କରିପାରୁଥିବା ଜୟଦେବ କିମ୍ବା ଅନ୍ୟ କବିଙ୍କର ଯେକୌଣସି ଶାସ୍ତ୍ରୀୟ ସଙ୍ଗୀତ ଦିଆଯାଇପାରେ ।)

ମହାସେବକ - ମହାରାଜ, ଲୀଳାମୟୀର ଆଜି ନୃତ୍ୟ ପୂର୍ବର ସମସ୍ତ ରେକର୍ଡ ଭଙ୍ଗ କରିପାରିଛି ।

ମହାପୂଜକ - ଖାଲି ସେତିକି ନୁହେଁ । ପ୍ରଭୁଙ୍କ ଶ୍ରୀମୁଖରେ ଆଜି କିପରି ଦିବ୍ୟ ଜ୍ୟୋତି ଫୁଟି ଉଠୁଛି । ଏହା ଯେମିତିକି ଅସାଧାରଣ । (ନାଚି ନାଚି ଦେବଦାସୀ ଢଳି ପଡ଼ିଥିଲା ରାଜାଙ୍କ ପାଦ ପାଖରେ ।

ରାଜା - ଧନ୍ୟ... ଧନ୍ୟ ଦେବଦାସୀ । ତମର ଜୀବନ ଧନ୍ୟ ।

ପ୍ରଶାସକ - ହେ ଈଶ୍ୱର ସଙ୍ଗିନୀ, ତମେ ହିଁ ବାସ୍ତବରେ ଏ ମର୍ତ୍ତ୍ୟମଣ୍ଡଳର ଅପ୍‌ସରୀ । (ଦେବଦାସୀଙ୍କୁ ପଡ଼ିଯିବା ଦେଖି ଭୂଇଁ ଉପରୁ ଟେକି ଧରିଥିଲେ ମହାସେବକ । ଈଶ୍ୱରଙ୍କ ପାଦୋଦକ ସିଞ୍ଚି ଚାଲିଥିଲେ ମହାପୂଜକ । କିଛି ସମୟ ପରେ ଦେବଦାସୀର ଜ୍ଞାନ ଫେରିଆସିଛି ।)

ରାଜା - ଲୀଳାମୟୀ, ତମର ନୃତ୍ୟ ଆଜି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଦେଇଛି ।

ଦେବଦାସୀ - ସବୁତ ସେଇ କରୁଣାମୟଙ୍କ ଇଚ୍ଛା (ଏଇ ସମୟରେ ଘଣ୍ଟାଘଣ୍ଟି ବାଜି ଉଠିଛି । ଆସନ ଉପରୁ ଉଠି ଠିଆ ହୋଇଛନ୍ତି ରାଜା ଏବଂ ପାରିଷଦବର୍ଗ । ଘଣ୍ଟି ଘଣ୍ଟା ବନ୍ଦ ହୋଇଛି । ରାଜାଙ୍କୁ ନମସ୍କାର କରି ଦେବଦାସୀ ଚାଲିଯାଇଛି ।)

ପ୍ରଶାସକ - ମହାରାଜା, ଚଳିତ ବର୍ଷ ଈଶ୍ୱରଙ୍କ ସେବାପାଇଁ ସରକାର ଯାହା ଗ୍ରାଣ୍ଟ ଦେଇଛନ୍ତି ସେତିକିରେ ସବୁକାମ ଚଳିବା ଅସମ୍ଭବ ।

ମହାପୂଜକ - ହଁ, ମହାରାଜ, ଈଶ୍ୱରଙ୍କ ଅନ୍ନଭୋଗ ବାବଦକୁ ସରକାର ମାତ୍ର ୨୦ ଲକ୍ଷ ଟଙ୍କା ଦେଇଛନ୍ତି । ବର୍ଷକୁ ଏଠି କେତେ ଖର୍ଚ୍ଚ ହୁଏ, ତାହା ଆପଣ ଭଲଭାବେ ଜାଣନ୍ତି ।

ମହାସେବକ - ସେବକମାନଙ୍କ ପାଉଣା ବାବଦକୁ ମିଳିଛି ମାତ୍ର ୮୦ଲକ୍ଷ ଟଙ୍କା । ଏପରି ହେଲେ ଈଶ୍ୱରଙ୍କ ସେବାରେ ନିଶ୍ଚୟ ବିଶୃଙ୍ଖଳା ଘଟିବ ।

ରାଜା - ତମେମାନେ କୁହ, ମୁଁ ଆଉ କ'ଣ କରିପାରିବି ?

ପ୍ରଶାସକ - ହଁ, ମହାରାଜ ଆପଣ ଈଶ୍ୱରଙ୍କ ଚଳନ୍ତି ପ୍ରତିମା । ଆପଣ ଚାହିଁଲେ ସବୁକିଛ ଠିକ୍ ହୋଇଯିବ ।

ରାଜା - ହୁଁ, ଚଳନ୍ତି ପ୍ରତିମା । ସିଂହାସନ ଉପରେ ମହଣ ମହଣର ଧୂଳି ଏବେବି ଜମା ହୋଇରହିଛି । ସଫା କରିବାକୁ ଚେଷ୍ଟା ବି, ଦିନେ ହେଲେ କରିନି । ସବୁ ଦେହସୁହା ହୋଇଯାଇଛି । ଅଭ୍ୟାସଗତ ।

ମହାସେବକ - ମହାରାଜ, ରାଜତନ୍ତ୍ର ଚାଲିଯାଇଥିଲେ ବି ଆପଣ ଆମ୍ଭମାନଙ୍କର ମୁକୁଟ ବିହୀନ ସମ୍ରାଟ ।

ରାଜା - ହଁ (ଦୀର୍ଘଶ୍ୱାସ) । ରାଜତନ୍ତ୍ରର ଖୋଳ ଭିତରେ ବଞ୍ଚି ରହୁଥିବା ମଣିଷଟାକୁ ଅନ୍ତତଃ 'ରାଜା' କହିବାରେ କାହାରି ଦ୍ୱିଧା ନାହିଁ ।

ପ୍ରଶାସକ - ମହାରାଜ, ଏବେବି ଏ ମହୀମଣ୍ଡଳର ଲକ୍ଷ ଲକ୍ଷ ପ୍ରଜା ଆପଣଙ୍କୁ ସମ୍ମାନ ଦିଅନ୍ତି । ଆପଣଙ୍କ ଉଦ୍ଦେଶ୍ୟରେ ସେମାନଙ୍କ ମଥା ସ୍ୱତଃ ନଇଁଯାଏ ।

ରାଜା - ରାଜତନ୍ତ୍ରର ମୃତ୍ୟୁ ପରେ ସେମାନେ 'ପ୍ରଜା' ପାଲଟି ଯାଇଛନ୍ତି । ଗୋଟାଏ 'ସ୍ୱାଧୀନ ଭୂଖଣ୍ଡର ନାଗରିକ । ସେମାନଙ୍କ ଭିତରେ ଏଇ 'ରାଜା' ଉପାଧିଧାରୀ ବ୍ୟକ୍ତି ବି ଜଣେ ।

ମହାପୂଜକ - ମହାରାଜ, ଆପଣ ଆମ ଆଖିରେ ମଣିଷ ନୁହଁନ୍ତି, ଦେବତା । ଆମର ଅନ୍ନଦାତା । ଆଜି ସିନା ଈଶ୍ୱର ନିବାସର ରକ୍ଷଣାବେକ୍ଷଣ ଭାର ସରକାର ନେଇଛନ୍ତି, ହେଲେ ଯୁଗ ଯୁଗ ଧରି ଈଶ୍ୱର ନିବାସ ପରିଚାଳିତ ହେଉଥିଲା ଆପଣଙ୍କ ଦାନରେ । ମହାରାଜାଙ୍କ ଦାନରେ ।

ରାଜା - କର୍ପୂର ଉଡ଼ିଯାଇଛି, ହେଲେ ଯାହା ପଡ଼ିରହିଚି, ତାହା କେବଳ କନା ମାତ୍ର ।

ପ୍ରଶାସକ - ଈଶ୍ୱର ନିବାସ ସରକାରୀ ନିୟନ୍ତ୍ରଣାଧୀନକୁ ଆସିଲା ପରଠୁଁ ଏଠି ଅଶାନ୍ତି ବଢିଛି । ନିତି ବିଭ୍ରାଟ ଲାଗି ରହିଛି ।

ମହାପୂଜକ - ସରକାରୀ ନିୟମାନୁସାରେ ଈଶ୍ୱର ନିବାସର ପ୍ରଶାସନ ଚାଲିପାରେ, ମାତ୍ର ନୀତି ନିୟମ ନୁହେଁ । ଏଥିପାଇଁ ଦରକାର ଶୁଦ୍ଧପୂତ ହୃଦୟ ।

ମହାସେବକ - ମୋ ବାପ ଅଜା ଚଉଦ ପୁରୁଷ କେହି କେବେ ଈଶ୍ୱର ନିବାସରୁ ବେତନ ପାଉନଥିଲେ । ସମସ୍ତେ ଚଳୁଥିଲେ ଈଶ୍ୱରଙ୍କ ପ୍ରସାଦ ଉପର ନିର୍ଭର କରି । ହେଲେ ସରକାର ଆଜି ଆମକୁ ସେଥିରୁ ବଞ୍ଚିତ କରିବାକୁ ଯାଉଛନ୍ତି ।

ମହାପୂଜକ - କେତେଟା ଟଙ୍କା ଭିତରେ ଈଶ୍ୱରଙ୍କ ସେବା ପୂଜା ସବୁକିଛିକୁ ବାନ୍ଧି ଦିଆଯାଇଛି ।

ରାଜା - ହଁ (ଦୀର୍ଘଶ୍ୱାସ) । ରାଜବାଟୀ ପରିଣତ ହୋଇଛି ସରକାରୀ ବାସଭବନରେ । ଆଉ ରାଜା ପାଲଟି ଯାଇଛି ସରକାରୀ ଅନୁଦାନର ଏକ ଦାସ ମାତ୍ର ।

ସମସ୍ତେ - 'ମହାରାଜ'.... *(ଦୁଃଖ ଏବଂ କ୍ଷୋଭରେ ରାଜା ଭାଙ୍ଗି ପଡୁଥା'ନ୍ତି । ମଥା ତାଙ୍କର ନଇଁ ଆସିଛି । ଧୀରେ ଧୀରେ ମଞ୍ଚ ଅନ୍ଧକାର ହୋଇଆସିଛି ।)*

# ଚତୁର୍ଥ ଦୃଶ୍ୟ

*(ଦେବଦାସୀ ଲୀଳାମୟୀର ନିବାସ । ସମୟ ରାତ୍ରି । ସୁବାସିତ ଗନ୍ଧରେ ମହକି ଉଠୁଥିଲା ଦେବଦାସୀର ଅଗଣା । ଗୋଲାପ ଫୁଲର ତୋଡ଼ାଟିଏ ଧରି ଆସିଛି ମହାସେବକ)*

ମହାସେବକ – ଲୀଳାମୟୀ... ଲୀଳା... ପ୍ରାଣପିୟା ମୋର...

ଦେବଦାସୀ– (ଭିତରୁ ଆସିଛି) ସେବକ ମହାରାଜ, ଏ ବିଳମ୍ବିତ ପ୍ରହରରେ ଆସିବାଟା.... ମହାସେବକଙ୍କୁ ଏପରି ଅବସ୍ଥାରେ କେହି ଯଦି ଦେଖେ...

ମହାସେବକ – ନିଜ ଲୋକ ପାଖରେ ପୁଣି କପଟ କ'ଣ ? (ଫୁଲଦେଇ)

ଦେବଦାସୀ – ତମ ସମ୍ମାନ ପାଇଁ ମୁଁ କହୁଛି । ଈଶ୍ୱରଙ୍କ ପ୍ରଧାନ ସେବକ ତମେ । ତମେ ଯଦି ଏତେ ରାତିରେ ଈଶ୍ୱରଙ୍କ ସେବାଦାସୀ ଘରେ ପାଦ ଦିଅ...

ମହାସେବକ – ସହର ନିସ୍ତବ୍ଧ । ସମସ୍ତେ ନୀରବ । ନିଜେ ଈଶ୍ୱର ବି ଶୋଇଯିବେଣି । କାରଣ ଧୂପ କେତେବେଳୁ ବଢ଼ିଲାଣି ।

ଦେବଦାସୀ – ଏ ଖବର ଯଦି କାନକୁ ଦି'କାନ ହୁଏ ? ମୁଁ ତ ନର୍କ ଭିତରେ ଜନ୍ମ

ନେଇଛି । ତେଣୁ ନର୍ଦ୍ଦମାର ପୂତିଗନ୍ଧମୟ ବାସନା ମୋ ପାଇଁ ପଙ୍କଚନ୍ଦନ । କିନ୍ତୁ ତମେ ?

ମହାସେବକ - ଲୀଳା, ତମକୁ ଛାଡ଼ି ମୁହୂର୍ତ୍ତେ ବି ମୁଁ ରହିପାରିବିନି । ଯିଏ ଯାହା କହୁଛି, କହୁ, ମୋର ତୋ....ମୁଁ ମହାସେବକ....

ଦେବଦାସୀ - କ୍ଷଣିକ ଉତ୍ତେଜନା ମଣିଷକୁ ସର୍ବନାଶ ପଥକୁ ନେଇଯାଏ ।

ମହାସେବକ - ତା'ହେଲେ ଆମର ଏତେ ମିଳାମିଶା.. .ଭଲପାଇବା ?

ଦେବଦାସୀ - ଦେହଟା ଯାହାର ଉତ୍ସର୍ଗୀକୃତ, ତା' ପାଇଁ ଭଲପାଇବାଟା ଗୋଟାଏ ମୂଲ୍ୟହୀନ ପ୍ରଳାପ ।

ମହାସେବକ - ନା'...ଲୀଳା...ନା'... । ଏହା ମୋ ଲୀଳାମୟୀର ଅନ୍ତରର ଭାଷା ହୋଇପାରେନା ।

ଦେବଦାସୀ - ସେବକ ମହାରାଜ, ଏବେବି ସମୟ ଅଛି । ତମେ ଚାହିଁଲେ ନିଜକୁ ସଂଶୋଧନ କରିପାରିବ ।

ମହାସେବକ - ବଢୁଥିବା ନଈ... ଗଡୁଥିବା ପଥର... ରଡୁଥିବା ନିଆଁର ପଥ କିଏ ରୋଧ କରିବ ? ମୋ ମନ ପ୍ରାଣ... ହୃଦୟ ସବୁଠି କେବଳ ତମରି କମ୍ପନ । କୁହ, ତୁମକୁ ଛାଡ଼ି ମୁଁ ବଞ୍ଚି ପାରିବି କେମିତି ?

ଦେବଦାସୀ- 'କିନ୍ତୁ...' ଘରେ ତମର ପରିବାର ଅଛି - ମା' ବାପା....

ମହାସେବକ- ବାଧା ଦିଅନା ଲୀଳା । ବଢୁଥିବା ଦୁଇ ନଦୀର ଧାରକୁ ମିଶିଯିବାକୁ ଥରେ ସୁଯୋଗ ଦିଅ । ଦେଖିବ, ଏ ପୃଥିବୀ ବାହାରେ ବି ଆଉ ଗୋଟାଏ ଜୀବନ ଅଛି । ତମେ ଅନୁଭବ କରିପାରିବ ।

ଦେବଦାସୀ - ମୁଁ ଈଶ୍ୱରଙ୍କ ସେବାଦାସୀ । ମୋର କାୟୋମନୋବାକ୍ୟ ତାଙ୍କରି ପାଇଁ ଉତ୍ସର୍ଗୀକୃତ ।

ମହାସେବକ - କେତେଦିନ ଧର୍ମର ପ୍ରହେଳିକା ଭିତରେ ନୀତିକୁ ଜାବୁଡ଼ି ଧରି ବଞ୍ଚିବ ? ଦେହର ଭୋକ ପାଇଁ କୋଉ ଶାସ୍ତ୍ର ସମାଧାନର ସୂତ୍ର ବାହାର କରିବ ?

ଦେବଦାସୀ - 'କିନ୍ତୁ' ମନ ଭିତରଟା -

ମହାସେବକ - ପାପପୁଣ୍ୟ ବୋଧ, ମଣିଷ ହାତ ତିଆରି ଗୋଟାଏ ଗୋଟାଏ ଅନ୍ଧବିଶ୍ୱାସ । ଧର୍ମର ନିକିତିରେ ମୁଁ ମହାସେବକ । କିନ୍ତୁ ୟା' ବାହାରେ ମୋର ଆଉ ଗୋଟାଏ ପରିଚୟ ଅଛି । ସେଇଟା ହେଉଛି ଗୋଟାଏ ସାମାଜିକ ମଣିଷର ।

ଦେବଦାସୀ - ସବୁ ହାତ ପାହାନ୍ତାରେ ଥାଇ ମଧ୍ୟ ମୁଁ କିଛି ଗ୍ରହଣ କରିପାରେନି । ମୋ ଆଗର ଲକ୍ଷ୍ମଣରେଖା ମୋତେ ହିଁ ବ୍ୟଙ୍ଗ କରୁଛି ।

ମହାସେବକ - ସବୁ ଗୁଡ଼ାଏ ମନର ଭ୍ରମ । କୁହ, ଯେଉଁ ଈଶ୍ୱରଙ୍କ ଲାଗି ତୁମେ ନିଜକୁ ତିଳ ତିଳ କରି ଦଗ୍ଧ କରି ଚାଲିଛି, ସେ କେବେ ବୁଝିଛନ୍ତି ଗୋଟାଏ ନାରୀ ହୃଦୟର ବେଦନା ? ତା' ମନର କଥା ?

ଦେବଦାସୀ - ସେବକ ମହାରାଜ (ବିବ୍ରତ) ।

ମହାସେବକ - ଅପ୍ରିୟ ସତ୍ୟ ସବୁବେଳେ ଯନ୍ତ୍ରଣାଦାୟକ । ଦେବଦାସୀର କା' ଧରି କେତେଦିନ ନାଚୁଥିବ ? ଅନ୍ୟ ରମଣୀମାନଙ୍କୁ ଦେଖିଲେ ତମ ଭିତରେ କ'ଣ ପ୍ରତିକ୍ରିୟା ସୃଷ୍ଟି ହୁଏନା ? ଅନ୍ୟର ସନ୍ତାନ ଦେଖିଲେ ତମ ଭିତରର ମାତୃତ୍ୱ କ'ଣ ଉଛୁଳି ଉଠେନା ?

ଦେବଦାସୀ - 'ସେବକ ମହାରାଜ'....

ମହାସେବକ - ନା' ଲୀଳା, ବରଂ ନାଣ୍ଟୁ ବୋଲି ଡାକ । ମୁଁ ଆଜି ମହାସେବକ ନୁହଁ । ତମର ପ୍ରେମିକ 'ନାଣ୍ଟୁ' ।

ଦେବଦାସୀ - 'ନାଣ୍ଟୁ'.... ଆଃ (ସମ୍ମୋହିତ)

ମହାସେବକ - 'ଲୀଳା' । *(ଉଭୟ ପରସ୍ପରକୁ ଜଡ଼ାଇ ଧରିଛନ୍ତି । ସେହି ମନ୍ତ୍ରମୁଗ୍ଧ ମୁହୂର୍ତ୍ତ ଭିତରେ ମଞ୍ଚ ଅନ୍ଧକାର ହୋଇଆସିଛି ।)*

# ପଞ୍ଚମ ଦୃଶ୍ୟ

*(ଈଶ୍ୱର ନିବାସର ମୁଖଶାଳା । ଭୋର ସମୟ । ଦ୍ୱାରଦେଶରେ ଲୋକମାନଙ୍କର ଯିବା ଆସିବା ଲାଗି ରହିଥିଲା । ନିବାସ ଭିତରୁ ଭାସି ଆସୁଥିଲା ଭକ୍ତି ସଙ୍ଗୀତ । ଯେ କୌଣସି ଧର୍ମର ଭକ୍ତି ସଙ୍ଗୀତ"ର କେତୋଟି ପଦ ଦିଆଯାଇପାରେ । ସଙ୍ଗୀତ ମଝିରେ ମଝିରେ ଭକ୍ତଗଣ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ହାତ ଟେକୁଥିବାର ଦେଖାଯାଉଥିଲା)*

ମହାସେବକ - (ଦ୍ୱାରଦେଶରେ) ହଇହେ, ପଇସାଟିଏ ତ ଝଡ଼ିବାକୁ ନାହିଁ । କାହିଁକି ଗହଳି କରୁଛ ? (ଦ୍ୱାରଦେଶଠାରୁ କିଛି ଦୂରରେ ଆସି ପହଞ୍ଚିଛନ୍ତି ଯୋଶେଫ୍ ଓ ମେରୀ । ହାତରେ ଦୁଇଜଣଙ୍କର ଦୁଇଟି ବଡ଼ ବଡ଼ ବୋଝ । ଗୋଟିଏ ସ୍ଥାନରେ ସେସବୁକୁ ରଖି ଟିକିଏ ବିଶ୍ରାମ ନେବାକୁ ଚେଷ୍ଟା କରିଛନ୍ତି । ଦୃଷ୍ଟି ପଡିଛି ମହାସେବକଙ୍କର ।)

ମହାସେବକ - ଆସିଗଲେ.. ଆସିଗଲ ଭକତ । ମୁଁ ତ କେବଳ ତମ ଦିହିଁଙ୍କି ଅନେଇ ବସିଥିଲି ।

ଯୋଶେଫ୍ }
ମେରୀ - } ପ୍ରଣାମ ଆଜ୍ଞା ।

ମହାସେବକ - କୋଉଠୁ ଆସିଛ ?

ଯୋଶେଫ୍ - ଭୋପାଳରୁ । ମୁଁ ଯୋଶେଫ୍ । ଇଏ ମୋ ସ୍ତ୍ରୀ ମେରୀ ।

ମେରୀ - ସେବକ ମହାରାଜ, ଈଶ୍ୱରଙ୍କ ପହଡ଼ ପଡ଼ିନି ?

ଯୋଶେଫ୍ - ଈଶ୍ୱରଙ୍କ ଦର୍ଶନ ଲାଗି ବହୁବାଟରୁ ଆସିଛୁ ।

ମହାସେବକ - ତା'ମାନେ...ତା'ମାନେ...ତା'ମାନେ... । ବୁଝିଗଲି.. ଆଉ କହିବା ଦରକାର ନାହିଁ ।

ମେରୀ - ସେବକ ମହାରାଜ, ବଡ଼ ମାନସିକ କରି ଆସିଛି ।

ମହାସେବକ - (ତଳକୁ ଚାହିଁ ନୀରବ ହୋଇଯାଇଛି)

ଯୋଶେଫ୍ - ଆପଣ ହଠାତ୍ ନୀରବ ହୋଇଗଲେ କାହିଁକି ? ବହୁ ବାଟରୁ ଆମେ ଆସିଛୁ ।

ମେରୀ - ଆମକୁ ନିରାଶ କରନ୍ତୁ ନାହିଁ, ସେବକ ମହାରାଜ । ଆପଣଙ୍କର ପ୍ରାପ୍ୟ ଆମେ ଦେବୁ ।

ମହାସେବକ - (ତଥାପି ନୀରବ)

ଯୋଶେଫ୍ - କ'ଣ ହେଲା, ସେବକ ମହାରଜ ?

ମହାସେବକ - ତମେ ଦୁହେଁ ଈଶ୍ୱରଙ୍କ ଦର୍ଶନ କରିପାରିବ ନାହିଁ । (ଚାଲିଯାଉଥିଲେ । ମେରୀ ମହାସେବକଙ୍କ ପାଦ ଧରିଛି ।)

ଯୋଶେଫ୍ - ସେବକ ମହାରାଜ, ଆମକୁ ଟିକିଏ ଦୟା କରନ୍ତୁ ।

ମହାସେବକ - ଛାଡ଼... ଛାଡ଼... ମୋ ପାଦ ଛାଡ଼... । ତମେ ଦୁହେଁ ଖ୍ରୀଷ୍ଟିଆନ୍ । ଈଶ୍ୱରଙ୍କ ଦର୍ଶନ ସମ୍ଭବ ନୁହେଁ ।

ଯୋଶେଫ୍ - କିନ୍ତୁ କାହିଁକି ? ଈଶ୍ୱର ତ ସମସ୍ତଙ୍କର । ସବୁ ଧର୍ମର । ସବୁ ମଣିଷଙ୍କର ।

ମେରୀ - ମହାରାଜ, ଆମକୁ ଟିକିଏ ଦୟା କରନ୍ତୁ । କେତେ ଆଶା କରି ଆସିଛୁ । ପ୍ରଭୁ ଯୀଶୁଙ୍କ ଇଚ୍ଛା ପୂରଣ କରନ୍ତୁ ।

ମହାସେବକ - ମୁଁ କିଛି କରିପାରିବି ନାହିଁ । ଈଶ୍ୱରଙ୍କ ନିବାସ ଭିତରକୁ ହିନ୍ଦୁମାନଙ୍କର କେବଳ ପ୍ରବେଶ ଅଧିକାର ଅଛି ।

ଯୋଶେଫ୍ - ତା'ହେଲେ କାହିଁକି ପ୍ରଚାର କରୁଛ, ଈଶ୍ୱର ସର୍ବଧର୍ମ ସମନ୍ୱୟର ଦେବତା ?

ମହାସେବକ - ଆରେ, ଏଇଟା ପାପୀଟାଏ ଦେଖୁଛି । ନଇଲେ ଗୋଟାଏ ଆଖି କାହିଁକି ଫୁଟିଥା'ନ୍ତା ।

ଯୋଶେଫ୍ - ଧର୍ମ ନାମରେ କାହିଁକି ତା'ହେଲେ ଏ ପ୍ରହେଳିକା ? କାହିଁକି ପ୍ରଚାର କରୁଛ... ଈଶ୍ୱର ଜଗତର ଠାକୁର ? Lord of the Universe !

ମହାସେବକ - ହଇବେ, ମତେ ତତ୍ତ୍ୱ ଶିଖେଇବୁ ? ମୋ ବୋପା ଅଜା ଚଉଦ ପୁରୁଷରୁ ଆମେ ଈଶ୍ୱରଙ୍କ ସେବା ପୂଜା କରିଆସିଛୁ । ଆମେ ତତ୍ତ୍ୱ ଜାଣିନୁ ? ମୁଁ ଈଶ୍ୱରଙ୍କ ମହାସେବକ.... ।

ଯୋଶେଫ୍ - ମେରୀ, ମୁଁ ମନା କରୁଥିଲି ନା'... । ଈଶ୍ୱର ହିନ୍ଦୁର ଦେବତା ତା' ପାଖକୁ ଯାଇ କିଛି ଲାଭ ହେବନି । ଯୀଶୁ ଆମର ଭଲ ।

ମେରୀ - ତମେ ସେମିତି କୁହନି । ଅନେକ ତ ପୁଣି ବିଧର୍ମୀ ମୁସଲମାନ ହୋଇ ତାଙ୍କ କରୁଣା ଲାଭ କରିପାରିଛନ୍ତି ।

ଯୋଶେଫ୍ - ନା'... ସବୁ ଗୁଡ଼ାକ ଛଳନା । ଏଇଟା ମନ୍ଦିର ନୁହେଁ, ହିନ୍ଦୁମାନଙ୍କର ଗୋଟାଏ ଖଟି । ଶୁଣିଥିଲି ଈଶ୍ୱର ହେଉଛନ୍ତି ସର୍ବଧର୍ମ ସମନ୍ୱୟର ଦେବତା । ହେଲେ ଆଜି ଦେଖୁଛି... ।

ମହାସେବକ - କ'ଣଟା ଦେଖୁଛ ମ୍ଳେଛ ?

ଯୋଶେଫ୍ - ଈଶ୍ୱର ହେଉଛନ୍ତି ଏଇ ସେବକ ପୂଜକମାନଙ୍କର ଏକଚାଟିଆ ଦେବତା । ଏମାନେ ଈଶ୍ୱରଙ୍କ ନାମରେ ପ୍ରତିପାଳିତ ଭଡ଼ାଟିଆ ଗୁଣ୍ଡା ।

ମହାସେବକ - ମୁର୍ଖ...ପାପୀ.. ବିଧର୍ମୀ । ତୋ ଜିଭଟା ଓପାଡ଼ି ଦେବି, ଆଉ ପଦେ ଯଦି ଈଶ୍ୱରଙ୍କ ବିରୁଦ୍ଧରେ କହିଛୁ - (ରାଗିକରି)

ଯୋଶେଫ୍ - କେତେଦିନ ଧର୍ମକୁ ଅଣ୍ଟି ଭିତର ପୂରାଇ ନିଜର ପ୍ରଭୁତ୍ୱ ଜାହିର କରିଚାଲିବ ? କେବଳ ଏଇଥିପାଇଁ ସେଦିନ କଳାପାହାଡ଼ ହିନ୍ଦୁ ମନ୍ଦିର ଆକ୍ରମଣ କରିଥିଲା । ହେ ଈଶ୍ୱର । କେତେଦିନ ତମେ ଏମିତି ଯେ ପୁରୋହିତ, ପୂଜକ, ସେବକମାନଙ୍କ ହାତରେ କ୍ରୀଡ଼ାନକ ସାଜି ଖେଳୁଥିବ ? କେତେଦିନ ଏମାନଙ୍କ ବିଜିନେସ୍ ବଢ଼ାଇ ଚାଲିଥିବ ?

ମେରୀ - ତମେ ଟିକେ ଚୁପ୍ ହୁଅ ଭଲା । କେତେ ଆଶା ନେଇ ଆସିଛେ ।

ଯୋଶେଫ୍ - ନା'... ମେରୀ ଆଉ ନୁହେଁ ! ଏ ଅନ୍ୟାୟ ବିରୁଦ୍ଧରେ ଆମକୁ ପ୍ରତିବାଦ କରିବାକୁ ହେବ । ମତେ ପ୍ରମାଣିତ କରାଇବାକୁ ହେବ, ଈଶ୍ୱର ସମସ୍ତଙ୍କର... ସବୁ ଧର୍ମର... ସବୁ ସମ୍ପ୍ରଦାୟର ।

ମହାସେବକ - ମ୍ଳେଚ୍ଛ... ଜାଣିଛୁ ତା' ପାଇଁ କେତେ ମୂଲ୍ୟ ଦେବାକୁ ପଡ଼ିବ । ଏ ପବିତ୍ର ଭୂମିକୁ ତୋ ପୂର୍ବରୁ ଯେତେ ଜଣ ଆସି ଏମିତି ବିଦ୍ରୋହ ହୁଙ୍କାର ତୋଳିଛନ୍ତି... ସେମାନେ ସମସ୍ତେ ଏଯାଏ ଜେଲ୍ ଭିତରେ ସଢି ସଢି ମରିଛନ୍ତି ଆଉ ସେ ଦଶା ତୋର ମଧ ହୋଇପାରେ ।

ମେରୀ - ନା... ସେବକ ମହାରାଜ, ତାଙ୍କୁ କ୍ଷମା କରିଦିଅନ୍ତୁ ।

ମହାସେବକ - ମୁଁ ଈଶ୍ୱରଙ୍କ ମହାସେବକ । ମୋର ଅପମାନ ସମଗ୍ର ହିନ୍ଦୁ ଜାତିର ଅପମାନ । ମୁଁ ଚାହିଁଲେ ୟେ ମ୍ଳେଚ୍ଛର ଗୋଟାଏ ବିନ୍ଦୁ ରକ୍ତ ବି ଏଠି ପଡ଼ିବନି । କ'ଣ ଭାବିଛୁ ଈଶ୍ୱରଙ୍କୁ !

ମେରୀ - ନା' ସେବକ ମହାରାଜ । ଆପଣ ଆମକୁ କ୍ଷମା କରିଦିଅନ୍ତୁ । ଆମେ ପଛେ ଫେରିଯାଉଛୁ ।

ମହାସେବକ - କେବଳ ତୋରି ପାଇଁ, ଏ ମ୍ଳେଚ୍ଛକୁ ମୁଁ ଛାଡ଼ି ଦେଉଛି । ତାହୁଁ ତ ତୁ ଏକା ଈଶ୍ୱରଙ୍କ ଦର୍ଶନ କରିପାରୁ । ହେଲେ ସିଧା ଦରଜା ଦେଇ ନୁହେଁ । ପଛପଟ କବାଟ ଦେଇ ତୋତେ ଯିବାକୁ ହେବ । ରାଜି ତ ? (ରାଗରେ ଥରୁଥିଲେ)

ମେରୀ - (ଉତ୍ତର ଆଶାରେ ଚାହିଁଛି ଯୋଶେଫ୍‌କୁ) ୟେ କ'ଣ କହୁଛ ? ମୁଁ ଯାଉଛି ? ତମେ ଏଇଠି ଜିନିଷପତ୍ର ଧରି ରହିଥାଅ । ମୁଁ ଖୁବ୍ ଶୀଘ୍ର ଫେରିଆସିବି । ଏଡ଼େ ଆଶାରେ ଆସିଛେ ... ଖାଲି ହାତରେ କ'ଣ ଫେରିଯିବା ?

ମହାସେବକ - ଆ'... ଆଉ ଡେରି କରନି । ଯଦି କେହି ଜାଣିଦିଏ - (ମହାସେବକ ଏବଂ ମେରୀ ଚାଲିଯାଇଛନ୍ତି । ସେମାନଙ୍କ ଯିବା ପଥକୁ ଚାହିଁ ରହିଛି ଯୋଶେଫ୍ । ନିଜ ଛାତି ଉପରେ କ୍ରସ୍ ଚିହ୍ନ କାଟିଛି ପ୍ରଭୁ ଯୀଶୁଙ୍କ ଉଦ୍ଦେଶ୍ୟରେ ।)

## ଷଷ୍ଠ ଦୃଶ୍ୟ

*(ସମୟ ଗଭୀର ରାତ୍ରି । ରାଜାଙ୍କ ବୈଠକଖାନା । ରାଜା ଢୋଳାଇ ପଡ଼ିଥିଲେ । ଈଶ୍ୱର ଆସି ପହଞ୍ଚିଛନ୍ତି । ରାଜା ସ୍ୱପ୍ନ ଦେଖୁଛନ୍ତି । ସ୍ୱପ୍ନର ଦୃଶ୍ୟକୁ ଈଷତ୍ ମଳିନ ଆଲୋକରେ ଦେଖାଇ ଦିଆଯିବ । ଈଶ୍ୱରଙ୍କ ପହଞ୍ଚିବା ପରେ ପରେ ରାଜାଙ୍କ ଉପରେ ପଡ଼ିଥିବା ଆଲୋକ ସାମାନ୍ୟ ମ୍ଲାନ ହୋଇଯିବ । ଢୋଳାଇବା ସ୍ଥାନରୁ ମନ୍ତ୍ରଚାଳିତ ମୂର୍ତ୍ତି ଭଳି ଉଠିଆସିଲେ ରାଜା ।)*

ରାଜା - ପ୍ରଭୁ, ଆପଣ ଏତେ ରାତିରେ ! ମୋତେ ଡ଼କାଇ ପାରିଥାନ୍ତେ ! ଈଶ୍ୱର ନିବାସରେ ଏତେ ସେବାକାରୀ ଥାଉଁ ଥାଉଁ ଆପଣ ପରିଶ୍ରମ କରି-

ଈଶ୍ୱର - ତମ ନିକଟକୁ ଆସିବାକୁ ବାଧ୍ୟ ହେଲି ।

ରାଜା - କ'ଣ ହେଇଛି ପ୍ରଭୁ ? ଆପଣ ଏତେ ଉଦ୍‌ବିଗ୍ନ କାହିଁକି ?

ଈଶ୍ୱର - ଆଉ କିଛି ବାକି ନାହିଁ, ରାଜା । ସବୁ ଶେଷ ହୋଇଯାଇଛି ।

ରାଜା - ଫିଟାଇ କୁହନ୍ତୁ ପ୍ରଭୁ । ନ କହିଲେ ଜାଣିବି କିପରି ।

ଈଶ୍ୱର - ମନ୍ଦିରର ମହାସେବକ ମୋ ଭକ୍ତର ସର୍ବନାଶ କରିଛି ।

ରାଜା - 'ପ୍ରଭୁ', ମୁଁ ଏ କ'ଣ ଶୁଣୁଛି ।

ଈଶ୍ୱର - ମୋ ଭକ୍ତର ସତୀତ୍ୱ ହରଣ କଲାପରେ ତାର ଗଳା ଚିପି ହତ୍ୟା କରିଛି ।

ରାଜା - ପ୍ରଭୁ, ଏହା ଯଦି ସତ୍ୟ ହୁଏ, ତେବେ ତାହାର ପରିଣତି ଭୀଷଣ ଭୟଙ୍କର ହେବ ।

ଈଶ୍ୱର - ସମୁଦ୍ର ବାଲୁକା ଶଯ୍ୟାରେ ଏବେ ବି ପଡ଼ିରହିଛି ମୋ ଭକ୍ତ ମେରୀର ଶବ । ବିଚାରୀ କେତେ ଆଶା ନେଇ ଆସିଥିଲା ।

ରାଜା - ପ୍ରଭୁ, ଏ ଦୁର୍ଘଟଣା ଘଟିଲା କିପରି ?

ଈଶ୍ୱର - ଭକ୍ତ ଦମ୍ପତି ବହୁ ଆଶାକରି ସୁଦୂର ଭୋପାଳରୁ ଏଠାକୁ ଆସିଥିଲେ । ମହାସେବକ, ମେରୀକୁ ମୋର ଦର୍ଶନ ପାଇଁ ନେଇ ନିବାସ ବାହାର ଗଳିରେ ତାର ସର୍ବନାଶ କରିଛି । ମେରୀର ସ୍ୱାମୀ ଯୋଶେଫ୍ ମୁଖଶାଳା ଦ୍ୱାରରେ ଏବେ ବି ତାର ବାଟ ଚାହିଁ ବସିଛି ।

ରାଜା - ହେଲେ, ମୁଁ ଏଥିରେ କ'ଣ କରିପାରିବି ପ୍ରଭୁ ।

ଈଶ୍ୱର - ବାଲୁକା ଶଯ୍ୟାରୁ ମେରୀର ଶବକୁ ନେଇ ତମେ ଯୋଶେଫ୍ ପାଖରେ ପହଞ୍ଚାଇ ଦେବ । ସେ ଖୁବ୍ ଭାଙ୍ଗିପଡ଼ିଛି ।

ରାଜା - 'କିନ୍ତୁ'-

ଈଶ୍ୱର - ଏଥିରେ କିନ୍ତୁର ପ୍ରଶ୍ନ ଉଠୁନି ରାଜା । ତମେ ମୋର ଚଳନ୍ତି ଅବତାର । ମୋ ଭକ୍ତକୁ ବର୍ତ୍ତମାନ ଏ ଦୁର୍ଦ୍ଦିନରେ ସାହାଯ୍ୟ କର । ମହାସେବକ ପାଇଁ ଶାସ୍ତିବିଧାନ କର ।

ରାଜା - ପ୍ରଭୁ, ଆପଣ କ'ଣ ମୋ ଅବସ୍ଥା ବିଷୟରେ ଜାଣିନାହାନ୍ତି ? ଏଠି ଲୁପ୍ତ ରାଜତନ୍ତ୍ରର ମୁଁ କେବଳ ଜଣେ ସୁପ୍ତ ପ୍ରତିନିଧି ମାତ୍ର । ପରମ୍ପରାର ଅନୁରୋଧରେ ମୁଁ କେବଳ ରାଜା ମାତ୍ର । ବିଚରା ସେବକଟିଏ !

ଈଶ୍ୱର - 'ନା' ରାଜା ! ତମେ ସେମିତି କୁହନି । ତମେ ଚାହିଁଲେ-

ରାଜା - ମୋର ଚାହିଁବା ସୀମିତ ପ୍ରଭୁ । ମୋ ହାତ ଗୋଡ଼ରେ ନୀତି ନିୟମର ବେଡ଼ି । ପ୍ରଶାସକ ଆଉ ପୂଜକଙ୍କ ଘେର ବାହାରକୁ ମୁଁ ଇଞ୍ଚେ ବ ଘୁଞ୍ଚିପାରିବି ନାହିଁ । ସବୁ ବିଧିବ୍ୟବସ୍ଥା ପୂର୍ବ ନିର୍ଦ୍ଧାରିତ ।

ଈଶ୍ୱର - କିନ୍ତୁ ତମକୁ ଏ ଦେଶର ଅଗଣିତ ଜନତା ଏବେ ବି ଶ୍ରଦ୍ଧା ଆଉ ଭକ୍ତି କରନ୍ତି । ତମେ ମୋର ପ୍ରଥମ ସେବକ ... ପ୍ରଥମ ଭକ୍ତ ।

ରାଜା - ସେହିମାନଙ୍କ ଅନୁରୋଧରେ ମୁଁ ଆଜି କଣ୍ଢେଇ ସାଜିଛି । ସରକାରୀ ଦାନ ଉପରେ ବଞ୍ଚୁଥିବା ଜଣେ ସାଧାରଣ ମଣିଷ ମାତ୍ର । ମୋର ଅଧିକାର ସୀମିତ ।

ଈଶ୍ୱର - ତମେ ଇଚ୍ଛା କଲେ ସବୁକିଛି ବଦଳିଯିବ ।

ରାଜା - ମୋର ସମସ୍ତ ଇଚ୍ଛା... ସମସ୍ତ କାମନା ଗଣ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ । ଜନଗଣଙ୍କର ଆଶା ଆକାଙ୍କ୍ଷା ହିଁ ମୋର ବାଧ୍ୟତାମୂଳକ ଇଚ୍ଛା । କେତେଟା ଟଙ୍କାର ପେନ୍‌ସନ୍ ମଧ୍ୟରେ ରାଜା ନାମକ ମଣିଷଟା ଆଜି କେବଳ ଅଭିନୟ କରିଚାଲିଛି । କୁହନ୍ତୁ ପ୍ରଭୁ, ସବୁତକ ସ୍ୱାଧୀନତା ହରଣ କରିନେଲା ପରେ ମୋର ପାଖରେ ଆଉ କ'ଣ ଅଛି ଆପଣଙ୍କୁ ଦେବାପାଇଁ ? ମୁଁ ଏକାନ୍ତ ନିଃସ୍ୱ ହୋଇଯାଇଛି ପ୍ରଭୁ । ପୁରୁଣା ରାଜବାଟୀରେ ସୁସଜ୍ଜିତ ଏକ କଣ୍ଢେଇ ମାତ୍ର ।

ଈଶ୍ୱର - ରାଜା, ତମେ ଭାଙ୍ଗିପଡ଼ନା । କର୍ପୁର ସିନା ଉଡ଼ିଯାଇଛି, ତଥାପି ଯେଉଁ କନା ଖଣ୍ଡିକ ପଡ଼ିରହିଛି, ସେଥିରେ ଏବେ ବି ସ୍ୱାଦ ରହିଛି ।

ରାଜା - ହଁ (ଦୀର୍ଘଶ୍ୱାସ), ସେ ସ୍ୱାଦ ରୁଗ୍‌ଣ ରାଜପ୍ରାସାଦର ଅନ୍ଧ ପରିବେଷ୍ଟନୀ ଭିତରେ ବଞ୍ଚୁଥିବା 'ରାଜା' ନାମକ ମଣିଷଟା ପାଇଁ କେବେ ବି କାମରେ ଆସିବ ନାହିଁ । ଗଣତନ୍ତ୍ର ମୋ ପ୍ରତି ଅସମ୍ମାନ କରିଛି, ମୁଁ କଦାପି ସେମାନଙ୍କୁ କ୍ଷମା କରିପାରିବି ନାହିଁ ।

ଈଶ୍ୱର - ତମେ କ'ଣ ଗଣତନ୍ତ୍ରକୁ ସମ୍ମାନ ଦିଅନା ?

ରାଜା - ସମ୍ମାନ ଦେଇଥିଲି । ଭାବିଥିଲି ମୋର ଉଚିତ ପ୍ରାପ୍ୟ ଫେରିପାଇବି । କିନ୍ତୁ ମୋତେ ମିଳିଲା କ'ଣ ? ବଦଳିଯାଉଥିବା ନୀତିନିୟମ... ଗଣତନ୍ତ୍ରର ଅଣନିଶ୍ୱାସୀ ଦୌଡ଼ ଭିତରେ କେତେକାଳ ବଞ୍ଚିବି ? କେମିତି ବଞ୍ଚିବି ? ଯଦି ମୋ ପରିବାର ବିଜିନେସ୍ କରୁନଥାନ୍ତା... ।

ଈଶ୍ୱର - କିନ୍ତୁ ଏ ଈଶ୍ୱର ନିବାସ ଯେ ତମରି ନିର୍ଦ୍ଦେଶରେ ପରିଚାଳିତ ହୁଏ ?

ରାଜା - ପରମ୍ପରାର ଅନୁରୋଧରେ ଏଠି ମୁଁ ଈଶ୍ୱରଙ୍କ ପ୍ରତିନିଧି । ହେଲେ ମୋର ସବୁ କାର୍ଯ୍ୟ ନିୟନ୍ତ୍ରିତ । କୁହନ୍ତୁ ପ୍ରଭୁ, କେତେକାଳ ଏମିତି ଯେ ସେବକ ଆଉ ଜନଗଣଙ୍କ ହାତର ଖେଳନା ସାଜି ନାଚୁଥିବି ?

ଈଶ୍ୱର - ସୃଷ୍ଟି ଆଜି ଗୋଟାଏ ଘଡ଼ିସନ୍ଧି ଭିତର ଦେଇ ଗତି କରୁଛି । ତା' ନ ହେଲେ ଗୋଟାଏ ପରେ ଗୋଟାଏ ଅନ୍ୟାୟ ଘଟୁ ନ ଥାନ୍ତା ? ସେଦିନ ଅରଣ୍ୟ ଛାଡ଼ି ସର୍ବସାଧାରଣଙ୍କ ପାଇଁ ମୁଁ ଏଠାକୁ ଆସିଥିଲି କେବଳ ତମରି ଅନୁରୋଧରେ ।

ରାଜା - ସବୁ ମନେଅଛି ପ୍ରଭୁ । ଆପଣଙ୍କୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରାଇବା ପାଇଁ ମୁଁ ନିଜେ ହିଁ ସମସ୍ତ ଆୟୋଜନ କରିଥିଲି ।

ଈଶ୍ୱର - ମୁଁ କ'ଣ ଏଥିପାଇଁ ଆସିଥିଲି ? ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଏ ପୃଥିବୀ ପୃଷ୍ଠରେ ବିଶ୍ୱମୈତ୍ରୀର ବନ୍ୟା ଛୁଟାଇବ ବୋଲି ତମେ ସେଦିନ ମତେ କଥା ଦେଇଥିଲ ନା ?

ରାଜା - ସମୟ ହିଁ ମୋତେ କାବୁ କରିଦେଲା, ପ୍ରଭୁ । ରାଜତନ୍ତ୍ର ଚାଲିଗଲା, ହେଲେ ରାଜା ନାମଧାରୀ ବ୍ୟକ୍ତିଟା ବଞ୍ଚି ରହିଲା, ବିଧ୍ୱସ୍ତ ରାଜତନ୍ତ୍ରର ଗରଳ ପାନ କରିବାପାଇଁ । ଏ ସେବକ ପୂଜକମାନେ ମତେ କାବୁ କରି ଦେଲେ । ପଶାପାଲିର ଗୋଟି କରିଦେଲେ ।

ଈଶ୍ୱର - ଦିନକୁ ଦିନ ମୋ ନିବାସରେ ପୂଜକ ଏବଂ ସେବକମାନଙ୍କର ଦୌରାତ୍ମ୍ୟ ବୃଦ୍ଧି ପାଇବାରେ ଲାଗିଛି । ଧର୍ମ ନାମରେ ଭଣ୍ଡାମି ଆଜି ନୀତି ହୋଇଯାଇଛି । ଏଥିପାଇଁ ତମେ କିଛି ଉପାୟ ଚିନ୍ତା କର ରାଜା ।

ରାଜା - ଆପଣ ବିଶ୍ୱନିୟନ୍ତା ହୋଇ ଯେତେବେଳେ ନିରୁପାୟ, ମୁଁ କ'ଣ କରିପାରିବି ? ଏଇ ଦେଖୁ ନାହାନ୍ତି, ଆପଣଙ୍କ ପ୍ରିୟ ଭକ୍ତର କ'ଣ ହେଲା ମୁଁ କିଛି ବି କରିପାରୁ ନାହିଁ । ସବୁ ଜାଣୁଛି... ତଥାପି ନିରୁପାୟ ।

ଈଶ୍ୱର - ଏ ରାତ୍ରି ଶେଷ ହେବା ପୂର୍ବରୁ ମୋତେ କିଛି ଗୋଟାଏ ବନ୍ଦୋବସ୍ତ କରିବାକୁ ପଡ଼ିବ । ମୁଁ ଆସୁଛି ରାଜା । *(ରାଜା ପ୍ରଣାମ କରିଛନ୍ତି । ଈଶ୍ୱର ବାହାରି ଯାଇଛନ୍ତି । ସେଇ ଈଷତ୍ ଆଲୋକରେ ରାଜା ଫେରିଆସିଛନ୍ତି ପୂର୍ବ ଅବସ୍ଥାକୁ । ଆଲୋକ ସ୍ୱାଭାବିକ ହେବାପରେ ଚମକି ଉଠିଛନ୍ତି ରାଜା ।)*

# ସପ୍ତମ ଦୃଶ୍ୟ

*(ଦେବଦାସୀ ଲୀଳାମୟୀର ଭବନ । ସମୟ ଦିବସ । ନୃତ୍ୟ ଛନ୍ଦରେ ରତ ଥିଲେ ଦେବଦାସୀ ସହିତ ଈଶ୍ୱର ନିବାସର ମହାସେବକ । ନୃତ୍ୟ ମଝିରେ ମହାସେବକର ପାଦ ଟଳମଟଳ ହୋଇଛି । ସେ ଭାରସାମ୍ୟ ରକ୍ଷା କରିପାରିନି । ଏଣୁ ସ୍ଥିର ହୋଇଯାଇଛି ।)*

ଦେବଦାସୀ - ଆଜି ଏତେ ଶ୍ରୀଘ୍ର ପରାଜୟ ବରଣ କରିନେଲ ?

ମହାସେବକ - ଦେବଦାସୀ ଲୀଳାମୟୀଠାରୁ ପରାଜିତ ହେବାରେ ମଧ ଏକ ପ୍ରକାର ଆନନ୍ଦ ଅଛି । (ମହାସେବକ ଚାହିଁ ରହିଛି ଏକ ଲୟରେ ଦେବଦାସୀ ଲୀଳାମୟୀର ମୁହଁକୁ ।)

ଦେବଦାସୀ - ୟେ'... ୟେ'... ! ଆରେ କ'ଣ ଏତେ ତନ୍ମୟ ହୋଇ ଦେଖୁଛ ? (ସ୍ୱାଭାବିକ ଅବସ୍ଥାକୁ ଫେରିଆସିଛି ମହାସେବକ)

ମହାସେବକ - ଏଁ... ! ହଁ ଦେଖୁଥିଲି... ଆଉ ଭାବୁଥିଲି । ଏତେ ରୂପ ଏତେ ଛନ୍ଦ ଗୋଟିଏ ମଣିଷ ଭିତରେ ଠୂଳ ହେଲା କେମିତି ?

ଦେବଦାସୀ - ନିଶାର ମାତ୍ରାଟା ଆଜି ବୋଧେ କିଛି ଅଧିକ ପଡ଼ିଯାଇଛି !

ମହାସେବକ - ଲୀଳା, ସତରେ ତମେ ଆଜି ଖୁବ୍ ସୁନ୍ଦର ଦେଖାଯାଉଛ ! ଅନ୍ୟ ସବୁଥରଠାରୁ ପୃଥକ ।

ଦେବଦାସୀ - ଆଜି ପକେଟ ଗରମ ଅଛି ବୋଧେ । ନଚେତ୍ ପାଟିରୁ ବଚନ ବାହାରୁ ନ ଥାନ୍ତା । ସେବକ... ପୂଜକମାନଙ୍କ ଥଳୀ ଓଜନ ଥିଲେ, ବେଳେ ବେଳେ, ଏମିତି ସାହିତ୍ୟ ଶୁଣାଯାଇଥାଏ ।

ମହାସେବକ - ସତ କହୁଛି ଲୀଳା, ତମକୁ ଗୋଟିଏ ମିନିଟ ବି ଛାଡ଼ିବାକୁ ମୋର ଜମା ଇଚ୍ଛା ହେଉନି । ଲାଲ୍‌ପାଣି ଆଉ ଲୀଳା ....(ସମ୍ମୋହିତ ଭାବେ ।)

ଦେବଦାସୀ - ଆଜି କାହା ମୁଣ୍ଡରେ ହାତ ବୁଲେଇଛ ?

ମହାସେବକ - ସତ କହୁଛି ଲୀଳା । ତ୍ରିବାର ସତ୍ୟ କରି କହୁଛି । ତମ ଛଡ଼ା ଆଉ ମୋର କେହି ନାହିଁ । ହଲପ୍ କରି କହୁଛି ।

ଦେବଦାସୀ - ଥାଉ... । ତେଲ ଅଧିକ ହେଲେ ବୋହିଯିବ ।

ମହାସେବକ - ମତେ ବିଶ୍ୱାସ କର ଲୀଳା । କେବଳ ତମରି ପାଇଁ ରାତିର ଅନ୍ଧାର ନମାନି ଏଠାକୁ ଛୁଟିଆସେ । ଈଶ୍ୱର ନିବାସର ନୀତି ନିୟମ ମୋ ପଥରେ କଣ୍ଟା ହୋଇ ଦେଖାଦେଇଛି । ଖାଲି ରାତିର ଅନ୍ଧାର ଯାହା ମୋ ପାଇଁ ପଥ ପରିଷ୍କାର କରିଦେଇଛି । ଆଜି ବି ଆସିପାରିନଥାନ୍ତି । ଆଜି ଈଶ୍ୱର ନିବାସରେ ସେବକ ପୂଜକମାନଙ୍କ ଧର୍ମଘଟ । ସେଇ ସୁଯୋଗରେ ମୁଁ ଏଠାକୁ ଖସି ଆସିଛି ।

ଦେବଦାସୀ - ସେଦିନ ନୃତ୍ୟମଣ୍ଡପରେ ସମସ୍ତେ ମୋତେ ବାହାବା କରିଥିଲେ ।

ମହାସେବକ - ସେଦିନ ତମର ନୃତ୍ୟ ଥିଲା ବାସ୍ତବରେ ଅସାଧାରଣ ।

ଦେବଦାସୀ - ମୁଁ କିନ୍ତୁ ତମଠାରୁ ଆଉ କିଛି ଆଶା କରୁଥିଲି ।

ମହାସେବକ - ମୁଁ ତ ସବୁକିଛି ତମକୁ ଦେଇସାରିଛି । ମନ... ପ୍ରାଣ... ହୃଦୟ ।

ଦେବଦାସୀ - ଇଚ୍ଛା କରିଥିଲେ ସେତିକ ଲୀଳାମୟୀ ଯାହାଠାରୁ ବି ଆଦାୟ କରିପାରିଥାନ୍ତା ।

ମହାସେବକ - ତେବେ - ? କ'ଣ ତୁମର ଇଚ୍ଛା ?

ଦେବଦାସୀ - ନିଜର ବୋଲି ଭାବୁଥିବା ମଣିଷଠାରୁ ଏ ଦେବଦାସୀ ଅନେକ କିଛି ଆଶା କରିଥିଲା ।

ମହାସେବକ - ଏ ମହାସେବକର ତମକୁ ତ କିଛି ଅଦେୟ ନାହିଁ, ଲୀଳା । ତମେ କୁହ ପ୍ରିୟା କାହା ଲାଗି ଈଶ୍ୱର ନିବାସର ମହାସେବକ ଆଜି ଅବିବାହିତ ? କାହାର ଆକର୍ଷଣରେ ଈଶ୍ୱର ନିବାସର ସମସ୍ତ ନୀତି ନିୟମ ଭଙ୍ଗକରି ମୁଁ ଛୁଟିଆସେ ଦେବଦାସୀ ଲୀଳାମୟୀର ଅଙ୍ଗନକୁ ?

ଦେବଦାସୀ - ମୁଣ୍ଡ ଭିତରେ କାମନାର ଭୂତଟା ସବାର ହୋଇଥିବା ପର୍ଯ୍ୟନ୍ତ ସବୁସେବକଙ୍କ ମୁଖରୁ ଏଇମିତି ନୀତିବାଣୀ ଶୁଣିବାକୁ ମିଳିଥାଏ ।

ମହାସେବକ - ମତେ ବିଶ୍ୱାସ କର ଲୀଳା ।

ଦେବଦାସୀ - କାମନାର ବହ୍ନି ପ୍ରଶମିତ ହେଇଗଲା ପରେ 'ଯଥା ପୂର୍ବମ୍ ତଥା ପରମ୍' ।

ମହାସେବକ - ବିଶ୍ୱାସ କରାଇବା ବ୍ୟତୀତ ତମକୁ ଦେଲାଭଳି ମୋ ପାଖରେ ଆଉ କିଛି ନାହିଁ ।

ଦେବଦାସୀ - ଚାହିଁଥିଲେ ତମେ -

ମହାସେବକ - ବିଶ୍ୱାସ କର ଲୀଳା । ତମେ ହିଁ ମୋ ଜୀବନର ପ୍ରଥମ ଏବଂ ଶେଷ ନାରୀ ।

ଦେବଦାସୀ - ଏଇ ଚାଟୁ ବାକ୍ୟ ମୋ ନିକଟରେ ଖୁବ୍ ପୁରୁଣା ହୋଇଯାଇଛି । ସେଥିରେ ଆଉ ପୁଟ ଦେଇ ଲାଭ କ'ଣ ?

ମହାସେବକ - ଲୀଳାମୟୀ, ତମେ ତା'ହେଲେ ମତେ-

ଦେବଦାସୀ - ଭୁଲ ବୁଝନି । ବରଂ ତମେ ମତେ ବୁଝିବାରେ ଭୁଲ କରୁଛ । ମୁଁ ତ ଚାହିଁ ନ ଥିଲି ଧନରତ୍ନ ଅର୍ଥ ଅଳଙ୍କାର ଏସବୁ । ଈଶ୍ୱରଙ୍କ ସେବାଦାସୀ ମୁଁ । ଈଶ୍ୱର ନିବାସରୁ ଯାହା କିଛି ମିଳେ, ସେତିକି ଗୋଟିଏ ମଣିଷ ପାଇଁ ଯଥେଷ୍ଟ ।

ମହାସେବକ - ଈଶ୍ୱରଙ୍କ ସେବା ପୂଜାରେ ମନର ଭୋକ ମରେନି ଲୀଳା । ସମୟ ସହିତ କ୍ଷୁଧା ବି ବଢ଼ିଯାଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଦେହ ଆଉ ମନର ଭୋକ ବି ପ୍ରବଳ ହୋଇଉଠେ ।

ଦେବଦାସୀ - ତଥାପି ଈଶ୍ୱରଙ୍କ ମୁଖକୁ ଚାହିଁ ମୁଁ ସବୁକିଛି ଭୁଲିବାକୁ ଚେଷ୍ଟା କରିଛି । କିନ୍ତୁ କେବଳ ତମରି ପାଇଁ ମୋ ଭିତରେ ଆଜି ଅଶାନ୍ତ ଝଡ଼ ।

ମହାସେବକ - ଥଣ୍ଡା ପାଣିରେ ବୁକୁର ଶୋଷ ମେଣ୍ଟେ, ହେଲେ ମନର ଶୋଷ ନୁହେଁ ।

ଦେବଦାସୀ - ଦେବଦାସୀମାନଙ୍କର ଭାଗ୍ୟ ଚିରଦିନ ସେଇ ପଥର ତଳେ । ସେମାନେ ସବୁଦିନେ ସେମିତି ଅପୂର୍ଣ୍ଣା ।

ମହାସେବକ - ନା' ଲୀଳା... ନା'... ।

ଦେବଦାସୀ - ଏ ସମାଜରେ ଦେବଦାସୀମାନେ ନାରୀ ନୁହଁନ୍ତି, ସେମାନେ ନାରୀ ଜଗତର ଏକ ମୂର୍ତ୍ତିମତୀ ଅଭିଶାପ ।

ମହାସେବକ - ଲୀଳାମୟୀ, ତମେ ଧିରେ ଧିରେ ରହସ୍ୟମୟୀ ହୋଇଯାଉଛ ।

ଦେବଦାସୀ - ସତ୍ୟ ସବୁବେଳେ ଏଇମିତି କଷ୍ଟଦାୟକ ହୋଇଥାଏ । ମହାସେବକ, ମତେ ତମେ ପୂନର୍ଜନ୍ମ ଦେଇପାରିବ ?

ମହାସେବକ - ବୁଝିପାରିଲିନି ଲୀଳା ।

ଦେବଦାସୀ - କାଲି ଈଶ୍ୱରଙ୍କ ଦରବାରରେ ଜନତାଙ୍କୁ ସାକ୍ଷୀ ରଖି ତମେ ମତେ ବିବାହ କରିପାରିବ ? ପାରିବ ? ତମେ ତ ଏଯାଏ ଅବିବାହିତ !

ମହାସେବକ - 'ଲୀଳା' ! (ଚମକି ପଡ଼ି) ତମେ ଯାହା କିଛି କହୁଛ ଭାବିଚିନ୍ତି କହୁଛ ତ ? ଈଶ୍ୱର ନିବାସର ମହାସେବକ ମୁଁ । ମୋର ପ୍ରତିଷ୍ଠା ଉପରେ ନିର୍ଭର କରୁଛି ଈଶ୍ୱର ନିବାସର ମର୍ଯ୍ୟାଦା । ବିଧିବହିର୍ଭୂତ କାର୍ଯ୍ୟ ମୁଁ କରିବି କିପରି ?

ଦେବଦାସୀ - ଜନତାଙ୍କୁ ଲୁଚିଛପି ଈଶ୍ୱରଙ୍କ ଦେବଦାସୀ ସହିତ ମିଳିତ ହେବାଟା କେଉଁ ବିଧାନରେ ଲେଖାଅଛି ? ତମେ ପ୍ରବଞ୍ଚକ... ସ୍ୱାର୍ଥପର...ତମେ ଗୋଟାଏ ଠକ...

ମହାସେବକ - ମୋତେ ଟିକେ ବୁଝିବାକୁ ଚେଷ୍ଟାକର ଲୀଳା ।

ଦେବଦାସୀ - ଆଜିଠୁଁ ମହାସେବକ ପାଇଁ ଏ ଦରଜା ବନ୍ଦ । ବର୍ତ୍ତମାନ ତମେ ଯାଇପାର... । *(ଦେବଦାସୀ ଚାଲିଯାଇଛି । ଥକ୍କା ମାରି ବସିଯାଇଛି ମହାସେବକ)*

# ଅଷ୍ଟମ ଦୃଶ୍ୟ

*(ଗଭୀର ରାତ୍ରି । ପଥ ମଧ୍ୟରେ ପଡ଼ିଯାଇଥିଲେ ମହାସେବକ । ଦେବଦାସୀ ଗୃହରୁ ଫେରିବା ବାଟରେ ପ୍ରଚୁର ନିଶା ସେବନ କରିଥିଲେ ଏବଂ ପଥ ପ୍ରାନ୍ତରେ ଟଳି ପଡ଼ିଥିଲେ ।)*

ଈଶ୍ୱର - 'ମହାସେବକ'...

ମହାସେବକ - କିଏ ?

ଈଶ୍ୱର - ଏ ଗଭୀର ରାତ୍ରିରେ ତମେ ଏ ରାସ୍ତାରେ-

ମହାସେବକ - ମୋ ଇଚ୍ଛା, ମୁଁ ଯୁଆଡ଼େ ଯାଇପାରିବି । ସେଥିରେ ବାଧା ଦେବାକୁ ତମେ କିଏ ?

ଈଶ୍ୱର - ମୁଁ ଈଶ୍ୱର ।

ମହାସେବକ - ହେଲେ ତମେ କାହିଁକି ଏତେ ରାତିରେ ଏଠି ଏ ରାସ୍ତାରେ? କ'ଣ ଦରକାର ? ନିବାସର ମୁଖ୍ୟ ଦ୍ୱାର ତ ବନ୍ଦ ଅଛି । ତମେ କେମିତି ବାହାରକୁ ଆସିଲ ?

ଈଶ୍ୱର - ଠିକ୍ ସେହି ପ୍ରଶ୍ନ ମୁଁ ଯଦି ତମକୁ ପଚାରେ ?

ମହାସେବକ - ଈଶ୍ୱର ନିବାସର ମହାସେବକ ମୁଁ । ମୋର ପ୍ରତ୍ୟେକଟି ଇଚ୍ଛା, ନିବାସର ଗୋଟିଏ ଗୋଟିଏ ନିୟମ ।

ଈଶ୍ୱର - ନିଜର ସ୍ଥିତି ବିଷୟରେ ଥରେ ସଚେତନ ହୁଅ, ମହାସେବକ ।
କେତେ ପାନ କରିଛ ? କୋଉଠୁ ଫେରୁଛ ? ଲୋକ ଜାଣିଲେ...

ମହାସେବକ - ବାଜେକଥା ବନ୍ଦକର ।

ଈଶ୍ୱର - ମୋରି ଅନ୍ନରେ ପ୍ରତିପାଳିତ ହୋଇ, ମୋରି ବାହୁଛାୟା ତଳେ ଆଶ୍ରୟ ନେଇ, ପୁଣି ମୋରି ଉପରେ ନାଲିଆଖି ?

ମହାସେବକ - ଈଶ୍ୱର ନିବାସର ସେବକ ମୁଁ । ମୋଫତ୍ ଖାଉନି ।

ଈଶ୍ୱର - କାଲି ପ୍ରଭାତରେ ଯେତେବେଳେ ଏ ସହରରେ ଜନସାଧାରଣ ଜାଣିବେ, ଈଶ୍ୱର ନିବାସର ମହାସେବକ ଷ୍ଟୈଣ... ନିଶାସକ୍ତ ବୋଲି... ?

ମହାସେବକ - ସେ ସୁଯୋଗ କେବେ ଜନତା ପାଇବେ ନାହିଁ । ସେମାନଙ୍କୁ ଧର୍ମର ମଦ ଖୁଆଇ ଅଥର୍ବ କରିଦେଇଛି ।

ଈଶ୍ୱର - ଦେବଦାସୀ ଲୀଳାମୟୀ ସହିତ ତମର ସମ୍ପର୍କକୁ, ତମେ କ'ଣ ଫାଙ୍କି ଦେଇପାରିବ ?

ମହାସେବକ - ମୋ ବ୍ୟକ୍ତିଗତ ମାମଲାରେ ହସ୍ତକ୍ଷେପ କଲେ, ମୁଁ ତମକୁ କେବେ କ୍ଷମା ଦେବିନି, ଈଶ୍ୱର ।

ଈଶ୍ୱର - ମହାସେବକ, ବାରମ୍ବାର ତମେ ସୀମା ଲଂଘନ କରୁଛ । ସେଦିନ ମହାରାଷ୍ଟ୍ରରୁ ଆସିଥିବା ଦମ୍ପତ୍ତିକୁ ତମେ ଈଶ୍ୱର ନିବାସକୁ ପ୍ରବେଶ କରାଇ ଦେଇନଥିଲ କ'ଣ ପାଇଁ ?

ମହାସେବକ - ସେମାନେ ବିଧର୍ମୀ । ଖ୍ରୀଷ୍ଟିଆନ୍ ।

ଈଶ୍ୱର - ମୋ ଦୃଷ୍ଟିରେ ସବୁ ଧର୍ମ ସମାନ ।

ମହାସେବକ - ସେସବୁ ପୋଥିର ପାଠ । ଆଉ ଅଳନ୍ଦୁ ଲଗା ପାଠ ମୂଲ୍ୟହୀନ ।

ଈଶ୍ୱର - ମହାସେବକ, ସବୁ ଜିନିଷର ଗୋଟାଏ ସୀମା ଅଛି ? ତମେ ମୋର ସେବାଦାସୀ ସହିତ ଦୈହିକ ସମ୍ପର୍କ ସ୍ଥାପନ କଲ... ।
ମୋ ଭକ୍ତ ମେରୀର ସର୍ବନାଶ କଲ !...

ମହାସେବକ - ତମେ ଯଦି ଈଶ୍ୱର, ସର୍ବଶକ୍ତିମାନ... ବାଧା ଦେଲନାହିଁ, କାହିଁକି ? ସେତେବେଳେ କୁଆଡ଼େ ଥିଲା ତମର ଐଶୀ ଶକ୍ତି ? ବରଗଡ଼ର

ଉମା ମାହେଶ୍ୱରୀ ମନ୍ଦିରରୁ ସୁନାର ମୂର୍ତ୍ତି, ଅଳଙ୍କାର ଲୁଟ୍ ହେଲା ବାଧା ଦେଲନି ? ମା' ଦୁଲ୍ଲଦେବୀଙ୍କ ହୁଣ୍ଡି ଭାଙ୍ଗି ମନ୍ଦିର ଟଙ୍କା ପଇସା ଲୁଟ୍ କଲେ । କୋଉଠି ଥିଲ ତମେ ?

ଈଶ୍ୱର - ଅନ୍ୟାୟର ଚରମ ବିନ୍ଦୁ ପର୍ଯ୍ୟନ୍ତ ମୁଁ ଅପେକ୍ଷା କରିଛି । ତା'ପରର ଅଧ୍ୟାୟ ବିଷୟରେ ତମେ ଭଲଭାବେ ଜାଣ ।

ମହାସେବକ - ଥାଉ, ସେ ଫମ୍ପା ଆଦର୍ଶ କଥା ମତେ ଆଉ ଶୁଣାଅନି । ତମେ ଅତୀତରେ କେବେ ଅବତାରୀ ଥିଲ, ସେକଥା ତମେ ଜାଣ । ହେଲେ ଏ ଆଧୁନିକ ଯୁଗରେ ତମର ସେ ଅବତାର ଆଉ କୌଣସି କାମ କରିବ ନାହିଁ । ଆଜିର ମଣିଷ ପାଇଁ ତମେ ହିଁ ପ୍ରଥମ ମୂଲ୍ୟହୀନ ପଥର । ତମେ ହିଁ ଆମର ବିଜିନେସ୍ ପାର୍ଟନର୍...

ଈଶ୍ୱର - 'ମହାସେବକ' ।

ମହାସେବକ - ଆଃ... ଆୱାଜ ବନ୍ଦକର । ଦେବଦାସୀ ଲୀଳାମୟୀ ସହିତ ତମେ ଚରମ ଅନ୍ୟାୟ କରିଛ, ଈଶ୍ୱର । ତା'ର କ'ଣ ଜୀବନ ନାହିଁ ? ତା'ର କ'ଣ ହୃଦୟ ନାହିଁ ? କେତେଦିନ ଗୋଟାଏ ରକ୍ତମାଂସର ଶରୀର ସହିତ ତମେ ଫମ୍ପା ଅଭିସାର ରଚନା କରି ଚାଲିଥାନ୍ତ ?

ଈଶ୍ୱର - ମୋ ଦେବଦାସୀ ପବିତ୍ର । ମୁଁ ତାକୁ ତମଠାରୁ ଭଲଭାବେ ଜାଣେ ।

ମହାସେବକ - ମିଥ୍ୟାର ଆଶ୍ରୟ ନିଅନି, ଈଶ୍ୱର । ଯିଏ ସାରାଜୀବନ ତମରି ସେବାରେ ନିଜକୁ ଉତ୍ସର୍ଗ କରିଛି, କ'ଣ ଦେଇଛ ତାକୁ ? କେବେ ବୁଝିଛ ତା' ହୃଦୟର କଥା ?... ତମେ ନିର୍ଜୀବ ଶିଳାଖଣ୍ଡର ପ୍ରତିମା ! ତମେ ବା କିପରି ବୁଝିବ ମଣିଷ ମନର ଗହନ ବ୍ୟଥା ?

ଈଶ୍ୱର - ମହାସେବକ, କଥାରେ ରଙ୍ଗ ଦେଇ ତରଙ୍ଗ କରିବାକୁ ଚେଷ୍ଟା କରନି । କାଲି ପ୍ରଭାତରୁ ଯେତେବେଳେ ଏ ଦେଶର ଜନସାଧାରଣ ତମର ଅପକୀର୍ତ୍ତି ବିଷୟ ଶୁଣିବେ, ଭାବିପାରୁଛ ତ ସେତେବେଳର କଥା ? ମଥା ଟେକି ଚାଲି ପାରିବ ତ ?

ମହାସେବକ - ଏ ଦେଶର ନାଗରିକମାନଙ୍କୁ ତମଠାରୁ ବେଶ୍ ଭଲଭାବରେ ମୁଁ ଜାଣେ । ଦେବତାଠାରୁ ଦେବତାର ସେବକ ପୂଜକକୁ ସେମାନେ

ଅଧିକ ବିଶ୍ୱାସ କରନ୍ତି । ଆଉ ସେହି ବିଶ୍ୱାସ ହିଁ ମୋ ବିଜୟର ମାପକାଠି । ଏଇଟା ଆମର ବିଜିନେସ୍ ଚାଲ୍....

ଈଶ୍ୱର - ମହାସେବକ, ତମେ ଭୁଲିଯାଉଛ ନିଜର ପଦମର୍ଯ୍ୟାଦା ବିଷୟ । ମୋରି ପ୍ରତି କରିଥିବା ବ୍ୟଭିଚାର ପାଇଁ ତମକୁ ଜନତାଙ୍କ ଦରବାରରେ ହାଜିର ହେବାକୁ ପଡ଼ିବ ।

ମହାସେବକ - ହୁଁ, ଜନ୍‌ତା । ମୋ ଆଙ୍ଗୁଳି ଅଗରେ ଯେଉଁମାନେ ଉଠ୍ ବସ୍ ହୁଅନ୍ତି, ସେହିମାନଙ୍କ କଥା ମତେ ଶୁଣାଉଛ ? ହେଲେ ମନେରଖ ଈଶ୍ୱର, ମୁଁ ଚାହିଁଲେ, ସବୁଦିନ ପାଇଁ ଈଶ୍ୱର ନିବାସ ତମଲାଗି ନିଷିଦ୍ଧ ହୋଇଯିବ ।

*ଘୋଷଣା - ୨୦୦୭ ଏପ୍ରିଲ୍ ୧୫ ତାରିଖ ଆମ୍ବେଦକରଙ୍କ ଜୟନ୍ତୀ ଅବସରରେ ରାଜ୍ୟର ସାତଟି ଜିଲ୍ଲାରୁ ଆସିଥିବା ନ'ଶହରୁ ଊର୍ଦ୍ଧ୍ୱ ଦଳିତ ଆଜି ଆଳିଠାରେ ଦିଲ୍ଲୀରୁ ଆସିଥିବା ବୌଦ୍ଧ ଭିକ୍ଷୁ ବିଶ୍ୱବନ୍ଧୁଙ୍କ ଦ୍ୱାରା ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇଛନ୍ତି । କେନ୍ଦ୍ରାପଡ଼ା ଜିଲ୍ଲାର କେରଡ଼ାଗଡ଼ ଜଗନ୍ନାଥ ମନ୍ଦିରରେ ଦଳିତଙ୍କ ପ୍ରବେଶକୁ ନେଇ ସୃଷ୍ଟି ହୋଇଥିବା ବିବାଦୀୟ ପରିସ୍ଥିତି ପୃଷ୍ଠଭୂମିରେ - ଏହି ଧର୍ମାନ୍ତରର ସ୍ୱତନ୍ତ୍ର ଗୁରୁତ୍ୱ ରହିଛି । ଅଦାଲତର ନିର୍ଦ୍ଦେଶ ସତ୍ତ୍ୱେ ଉଚ୍ଚଜାତିଙ୍କ ବିରୋଧ ଯୋଗୁ ମନ୍ଦିରରେ ଦଳିତମାନେ ପ୍ରବେଶ କରିବାରେ ସଂପୂର୍ଣ୍ଣ ଅଧିକାର ପାଇ ନାହାନ୍ତି ।*

ଈଶ୍ୱର - ଗୋଟାଏ ନିରପରାଧ ଭକ୍ତର ସର୍ବନାଶ କରିସାରିଲା ପରେ ମଧ ତମେ ନିଜର କୃତକର୍ମ ପାଇଁ ଅନୁତପ୍ତ ନୁହଁ ?

ମହାସେବକ - ସେ ପ୍ରଶ୍ନ ପଚାରିବାକୁ ଅଧିକାର ତମକୁ ଦେଲା କିଏ ? ଈଶ୍ୱର ନିବାସର ପ୍ରତିଟି କର୍ମ ମୋ ଦ୍ୱାରା ନିୟନ୍ତ୍ରିତ । ମୁଁ ଈଶ୍ୱରଙ୍କ ପ୍ରତିନିଧି ମହାସେବକ । ମୋର ପ୍ରତ୍ୟେକଟି ଆକାଙ୍‌କ୍ଷା ହିଁ ଈଶ୍ୱର ନିବାସର ଅଲିଖିତ ସମ୍ବିଧାନ ।

ଈଶ୍ୱର - କେବଳ ତମରିମାନଙ୍କ ଦୌରାତ୍ମ୍ୟରେ ଆଜି ସର୍ବତ୍ର ଦେବପୀଠ କଳଙ୍କିତ । ଧର୍ମର ମଦ ଖୁଆଇ ଏ ଦେଶର ଜନତାଙ୍କୁ ତମେ ପ୍ରତାରିତ କରିଛ । ଶେଷରେ ମୋରି ନାମକୁ ନେଇ କିଣାବିକା ମଧ ଆରମ୍ଭ କରିଦେଲ ? ହେଲେ ତମର ଏ ବ୍ୟବସାୟକୁ ଜନତା ବରଦାସ୍ତ କରିବେନି ।

ମହାସେବକ - ଆଉ ଈଶ୍ୱର, ଆଉ ନିର୍ମଳ ଭାବମୂର୍ତ୍ତି ଅବତାରଣା କରିବା ଦରକାର ନାହିଁ । ଆସନ୍ତାକାଲି ସର୍ବ ସମ୍ମୁଖରେ ମୁଁ ଘୋଷଣା କରିବି, ଈଶ୍ୱର ନିବାସରୁ ତମର ଆବଶ୍ୟକତା ଶେଷ ହୋଇଯାଇଛି । ଆମକୁ ଆଉ ଏକ ନୂଆ ଈଶ୍ୱରର ସନ୍ଧାନ କରିବାକୁ ହେବ । ଈଶ୍ୱରଙ୍କ ନବକଳେବର ନିତାନ୍ତ ଜରୁରୀ । (ଏହି ଧର୍ମାନ୍ତରର ସ୍ୱତନ୍ତ୍ର ଗୁରୁତ୍ୱ ରହିଛି । ଅଦାଲତର ନିର୍ଦ୍ଦେଶ ସତ୍ତ୍ୱେ ଉଚ୍ଚଜାତିଙ୍କ ବିରୋଧ ଯୋଗୁ ମନ୍ଦିରରେ ଦଳିତମାନେ ପ୍ରବେଶ କରିବାରେ ସମ୍ପୂର୍ଣ୍ଣ ଅଧିକାର ପାଇ ନାହାନ୍ତି ।) ଏ ବାଣୀ ମୋର କେବଳ ଈଶ୍ୱର ନିବାସ ପାଇଁ ନୁହେଁ । ସହରରୁ ଗ୍ରାମକୁ... ଗ୍ରାମରୁ ବସ୍ତିକୁ... ବସ୍ତିରୁ ବଣଜଙ୍ଗଲର ପ୍ରତ୍ୟେକ ମଣିଷଙ୍କ ପାଇଁ... ।

ଈଶ୍ୱର - ତମର ଏ ଗର୍ବ ବେଶିଦିନ ରହିବ ନାହିଁ, ମହାସେବକ । ମୁଁ ପୁଣିଥରେ ଅବତାର ଗ୍ରହଣ କରିବି ।

ମହାସେବକ - ହେ ମୋର ଖେଳନା ଈଶ୍ୱର... ମୋ ଚାବିଦିଆ କଣ୍ଢେଇ, ତା' ପୂର୍ବରୁ ଈଶ୍ୱର ନିବାସକୁ ମୁଁ ଭାଙ୍ଗି ଛାରଖାର କରିଦେବି । ଧରାପୃଷ୍ଠରୁ ତମର ସତ୍ତା ଟିକକ ବି ଲୋପ କରିଦେବି । ମଣିଷମାନଙ୍କୁ ଜଣାଇଦେବି, ତମେ ଏ ଯନ୍ତ୍ର-ଈଶ୍ୱର ପାଲଟି ଯାଇଛ । ତମର ସଂସ୍କାର ଆବଶ୍ୟକ... ଦରକାର ଆଉ ଏକ ନବକଳେବର... । *(ଖୁବ୍ ଜୋର୍‌ରେ ହସି ଉଠିଛି ମହାସେବକ । ଈଶ୍ୱର ବିବ୍ରତ ହୋଇ ଉଠି ନିଜର କାନ ଜାବୁଡ଼ି ଧରିଛନ୍ତି ।)*

# ନବମ ଦୃଶ୍ୟ

*(ସମୟ ଦିବସ । ରାଜାଙ୍କ ବୈଠକ ଗୃହ । ଉପସ୍ଥିତ ସଦସ୍ୟମାନଙ୍କ ମଧ୍ୟରେ ଥିଲେ ରାଜା, ପ୍ରଶାସକ, ମହାପୂଜକ । କିଛି ଗୋଟାଏ ବଡ଼ ଧରଣ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଚାଲିଥିଲା ।)*

ମହାପୂଜକ - ମହାରାଜ, ଆପଣଙ୍କ ସ୍ୱପ୍ନ ଯଦି ସତ୍ୟ ହୁଏ, ତେବେ ତାହାର ପରିଣତି ଅତ୍ୟନ୍ତ ବିଷମୟ ହେବ ।

ରାଜା - ତା'ପରେ ମୁଁ ସ୍ୱପ୍ନ, ଏକା ଦେଖିନାହିଁ । ଆପଣମାନେ ସମସ୍ତେ ଦେଖିଛନ୍ତି ।

ପ୍ରଶାସକ - ହଁ, ମିଥ୍ୟାର ପ୍ରଶ୍ନ ମଧ୍ୟ ଉଠୁନି ।

ରାଜା - ଏଯାଏ ମଧ୍ୟ ମହାସେବକଙ୍କର ଦେଖା ନାହିଁ ।

ପ୍ରଶାସକ - କେହି ମଧ୍ୟ ତାଙ୍କ ବିଷୟରେ କିଛି କହିପାରୁ ନାହାନ୍ତି । କୌଣସି ନିଷ୍ପତ୍ତି ନେବା ପୂର୍ବରୁ ଆମକୁ ଏ ଘଟଣାର ଭଲଭାବେ ତଦନ୍ତ କରିବାକୁ ହେବ ।

ମହାପୂଜକ - ଆଜି ସକାଳୁ ଈଶ୍ୱରଙ୍କ ମୂର୍ତ୍ତି କଳା ପଡ଼ିଯିବାର ଦେଖି ମୋର ସନ୍ଦେହ ଘନୀଭୂତ ହୋଇଛି ।

ରାଜା - ଈଶ୍ୱର ନିବାସ ଇତିହାସରେ ଏ ଘଟଣା ପ୍ରଥମ ।

ପ୍ରଶାସକ - ମୂର୍ତ୍ତି କଳା ପଡ଼ିବା ସାଙ୍ଗକୁ ଦେଉଳର ମୁଖଶାଳା ଉପରେ ଶାଗୁଣା ବସିବା...ମନ୍ଦିରରୁ ପଥର ଖସିବା...

ମହାପୂଜକ - ଗୋଟିଏ ପରେ ଗୋଟିଏ ଅଘଟଣ ଘଟି ଚାଲିଛି ।

ରାଜା - ମେରୀ ଶବକୁ ଡ଼ାକ୍ତରୀ ମାଇନା ପାଇଁ ପଠାଯାଇଛି । ଯଦି ଅଭିଯୋଗ ସତ୍ୟ ହୁଏ, ତେବେ ଅବସ୍ଥା ଅତି ସାଂଘାତିକ ହୋଇପଡ଼ିବ ।

ମହାପୂଜକ - ଈଶ୍ୱରଙ୍କ ବଂଶୀ, ଉତ୍ତରୀୟ ମଧ୍ୟ ହରଣଚାଳ ହୋଇଛି । ଘଟଣାଟା ଧୀରେ ଧୀରେ ରହସ୍ୟମୟ ହୋଇପଡୁଛି ।

ପ୍ରଶାସକ - ଗୋଟାଏ ଦିନ ଭିତରେ ଏତେକାଣ୍ଡ ଘଟିଗଲା, ଅଥଚ କେହି କିଛି ଜାଣିପାରିଲେ ନାହିଁ ।

ରାଜା - ଘଟଣାକୁ ଯଦି ରାଜନୈତିକ ରଙ୍ଗ ଦିଆଯାଏ, ତେବେ ଅବସ୍ଥା ଆହୁରି ଖରାପ ହୋଇପଡ଼ିବ ।

ମହାପୂଜକ - ତା'ହେଲେ ଉପାୟ କ'ଣ ମହାରାଜ ?

ରାଜା - ମତେ ଚାରିଆଡ଼େ ଅନ୍ଧକାର ଦେଖାଯାଉଛି । କିଛି ଭାବିପାରୁନି, କ'ଣ କରାଯିବ ।

*ଘୋଷଣା - ଚତୁର୍ଦ୍ଧା ବିଗ୍ରହଙ୍କ ବ୍ରହ୍ମ ସଂସ୍ଥାପନ ବିଳମ୍ବିତ ହେବା ଦ୍ୱାରା କୋଟି କୋଟି ହିନ୍ଦୁଙ୍କ ଭାବାବେଗ ପ୍ରତି ଆଘାତ ଲାଗିଛି । ମହାପ୍ରଭୁଙ୍କ ପରମ୍ପରା ଭଙ୍ଗା ହୋଇଛି । ଦାରୁ ଶ୍ରୀକ୍ଷେତ୍ର ଆସିଲାବେଳେ ଭକ୍ତମାନେ ଦାନ କରିଥିବା ଅର୍ଥକୁ ଶ୍ରୀମନ୍ଦିର ପ୍ରଶାସନ ଆକାଉଣ୍ଟରେ ଜମା କରିବା କଥା । ତାହାକୁ କରାନଯାଇ ସେହି ଅର୍ଥକୁ ଆତ୍ମସାତ କରାଯାଇଛି । ଦାରୁ ଚୟନରେ ବି ବ୍ୟାପକ ଅନିୟମିତତା ହୋଇଛି । ତେଣୁ ଏଭଳି ଦୋଷ କରିଥିବା ବ୍ୟକ୍ତିଙ୍କ ବିରୋଧରେ ଭାରତୀୟ ପିଙ୍ଗଳକୋର୍ଡରେ ବିଭିନ୍ନ ଧାରାରେ ମାମଲା ରୁଜୁ କରି ଦୃଢ କାର୍ଯ୍ୟାନୁଷ୍ଠାନ ଦାବି କରିଛନ୍ତି ଈଶ୍ୱର କ୍ଷେତ୍ର ସୁରକ୍ଷା ବାହିନୀ ଆବାହକ ଶ୍ରୀ ପଣ୍ଡା ।*

ପ୍ରଶାସକ - ମୁଁ ଭାବୁଛି, ଈଶ୍ୱର ନିବାସ ପକ୍ଷରୁ ଏ ବିଷୟରେ ଗୋଟାଏ ସ୍ୱଷ୍ଟ ମତାମତ ଦେବା ଠିକ୍ ହେବ ।

ମହାପୂଜକ - ଆଉ କି ମତାମତ ଦେବେ ପ୍ରଶାସକ ମହାଶୟ ? ଈଶ୍ୱର ନିବାସରେ ଯେ ଅନୀତି ଘଟିଛି, ଏ ବିଷୟରେ ଜନତା ନିଃସନ୍ଦେହ । କ'ଣ କହି ସେମାନଙ୍କୁ ବୁଝାଇବେ ? ଈଶ୍ୱରଙ୍କ ବିଗ୍ରହ କଳା ପଡ଼ିବା ଏବଂ ମୁଖଶାଳା ଉପରେ ଶାଗୁଣା ବସିବା - ଏ ଘଟଣା ଧୀରେ ଧୀରେ ସବୁଆଡ଼କୁ ବ୍ୟାପିଯିବ, ଲୋକେ ଜାଣିବେ ଈଶ୍ୱର ନିବାସର ଅନୀତି ପାଇଁ ଏସବୁ ଘଟିଛି ।

ପ୍ରଶାସକ -	ହଁ, ଘଟଣାଟା କେବେ ଲୁଚି ରହିବ ନାହିଁ ।

ରାଜା -	ଆପଣ ଈଶ୍ୱର ନିବାସର ପ୍ରଶାସନଟାକୁ ଆଉ ଟିକିଏ କଡ଼ା କରିଥିଲେ ବୋଧହୁଏ ଏଭଳି ଅବସ୍ଥା ଉପୁଜି ନ ଥାନ୍ତା !

ପ୍ରଶାସକ -	ନାମକୁ ମାତ୍ର ମୁଁ ପ୍ରଶାସକ । କିନ୍ତୁ ପ୍ରକୃତରେ ଈଶ୍ୱର ନିବାସର ସବୁ କାର୍ଯ୍ୟ ସେବକ, ପୂଜକମାନଙ୍କ ନିର୍ଦ୍ଦେଶରେ ଚାଲେ । ଏକଥାକୁ ମହାପୂଜକ କେବେ ଅସ୍ୱୀକାର କରିବେନି ।

ମହାପୂଜକ -	ଅବଶ୍ୟ, ତାହା ଅକ୍ଷରେ ଅକ୍ଷରେ ସତ୍ୟ ।

ରାଜା -	ଆପଣମାନେ ତାହେଲେ ପ୍ରତିବାଦ କାହିଁକି କରୁନାହାଁନ୍ତି ?

ପ୍ରଶାସକ -	ଏ ଦେଶର ଜନସାଧାରଣ ଅତି ମାତ୍ରାରେ ଧର୍ମଭୀରୁ । ଈଶ୍ୱରଙ୍କ ବାହୁଛାୟା ତଳେ ଆଶ୍ରୟ ନେଇଥିବା ଜାତି ପ୍ରତିବାଦ କରିବା ଶିଖିନାହିଁ । ଆତ୍ମସମର୍ପଣ ଯାହାର ଧର୍ମ, ସେ କି ପ୍ରତିବାଦ କରିବ ?

ରାଜା -	ଦୁଃଖ ଲାଗୁଛି ଏଇ ମଣିଷ ଜାତି ପାଇଁ । ଅନ୍ଧ ଭାବରେ କୌଣସି ଘଟଣାକୁ ବିଶ୍ୱାସ କରିଯିବା ଏମାନଙ୍କର ଗୋଟାଏ ନିତିଦିନିଆ ଅଭ୍ୟାସରେ ପରିଣତ ହୋଇଗଲାଣି ।

ମହାପୂଜକ -	ମହାସେବକ ଏଇଆଡ଼େ ଆସୁଛନ୍ତି (ଗୋଟିଏ ଦିଗକୁ ଚାହିଁ) ।

ମହାସେବକ - ପ୍ରଣାମ, ମହାରାଜ (ନମସ୍କାର କରି) । (ମହାସେବକଙ୍କ ହାତରେ ଥିଲା ଈଶ୍ୱରଙ୍କ ବଂଶୀ ଏବଂ ଉତ୍ତରୀୟ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଛନ୍ତି ।)

ମହାପୂଜକ -	ଏ ତ ଈଶ୍ୱରଙ୍କ ବଂଶୀ... ! ଯେ' ଉତ୍ତରୀୟ ବି ତାଙ୍କରି !

ପ୍ରଶାସକ -	ଏ ସବୁ ତମେ ପାଇଲ କେଉଁଠୁ ?

ମହାସେବକ - ସେଇତ ଆଶ୍ଚର୍ଯ୍ୟ ।

ରାଜା -	ମହାସେବକ, ତମେ ଏତେ ସମୟ ଧରି ଥିଲ କେଉଁଠି ?

ମହାସେବକ - ଆଉ କୋଉଠି ଥିଲି, ଥାନାରେ ! ପୋଲିସବାଲାଏ ସମୁଦ୍ର ବାଲିରୁ ଶବଟାକୁ ଉଠେଇ ନେଇଥିଲେ । ସାଥିରେ ଯେ' ଦୁଇଟି ଜିନିଷକୁ ବି ନେଇଯାଇଥିଲେ ।

ରାଜା -	ତା'ମାନେ ଏସବୁ-

ମହାସେବକ - ସେଇ ସ୍ତ୍ରୀ ଲୋକଟାର ଶବ ପାଖରେ ପଡ଼ିଥିଲା ।

ମହାପୂଜକ - ତମେ ସତ କହୁଛ, ମହାସେବକ ?

ମହାସେବକ - ଏତେଦିନ ଧରି ଈଶ୍ୱର ନିବାସରେ କାମ କଲା ପରେ ବି ମତେ ଚିହ୍ନିପାରିଲେ ନାହିଁ ? ଥାନାରୁ ଏସବୁ ନେଇ ମୁଁ ଫେରୁଛି ।

ରାଜା - ବିଶ୍ୱାସ ହେଉନାହିଁ । କ'ଣ ସବୁ ଯେ ଘଟିଯାଉଛି ।

ପ୍ରଶାସକ - ହେଲେ ତମେ କାହିଁକି ଥାନାକୁ ଯାଇଥିଲ ?

ମହାସେବକ - ପୋଲିସ୍ ଶବ ନେଲାବେଳେ ମୁଁ ସେଇଠି ଥିଲି । ଏ ଦୁଇଟି ଯାକ ଜିନିଷ ଈଶ୍ୱରଙ୍କର ବୋଲି ମୁଁ କହିଥିଲି ।

ପ୍ରଶାସକ - ତମେ ଟିକେ ଆମକୁ ଜଣାଇ ପାରିଥାନ୍ତ ?

ମହାସେବକ - କୋଉଠୁ ଆଉ ସମୟ ପାଇଲି ? ଯେମିତି ଚିହ୍ନି ପକାଇଛି, ସେମାନେ ତ ସାଙ୍ଗେ ସାଙ୍ଗେ ମତେ ଗାଡ଼ିରେ ବସେଇ ଥାନାକୁ ନେଇଗଲେ ।

ରାଜା - ହେଲେ ଈଶ୍ୱରଙ୍କ ଉତ୍ତରୀୟ ଆଉ ବଇଁଶୀ ସେଠାକୁ ଗଲା କେମିତି ? କ'ଣ ପାଇଁ ଗଲା ?

ମହାସେବକ - ସେଇ ବିଷୟ ତ ସହରଯାକ ଚର୍ଚ୍ଚା । ଖବରକାଗଜରେ ବାହାରିବ ଈଶ୍ୱରଙ୍କ ପରକୀୟା ପ୍ରୀତି ପ୍ରସଙ୍ଗ ।

ମହାପୂଜକ - ଲୋକମାନଙ୍କର ମତ ?

ମହାସେବକ - ଛି... ଛି... ସିଏ କି ଖରାପ କଥା ! କାନରେ ଶୁଣି ହେବନି । କେମିତି କହିବି ?

ରାଜା - ଲୋକେ କ'ଣ ଚର୍ଚ୍ଚା କରୁଛନ୍ତି ?

ମହାସେବକ - ଲୋକମାନଙ୍କର ବିଶ୍ୱାସ, ଏସବୁ ଈଶ୍ୱରଙ୍କ କାମ । ଅନେକ ଦିନରୁ ମନ୍ଦିରରେ ରାଧା ମୂର୍ତ୍ତିଟିଏ ସ୍ଥାପନା କରିବାପାଇଁ ଈଶ୍ୱର ସ୍ୱପ୍ନାଦେଶ କରିଥିଲେ ।

ରାଜା - ହଁ, ସେ'ତ ଅନେକ ଦିନର ପୁରୁଣା କଥା ।

ମହାସେବକ - ଆପଣ ରାଧା ମୂର୍ତ୍ତିଟି ଆଣିଲେ ନାହିଁ ।

ରାଜା - ସୁନାର ରାଧା ମୂର୍ତ୍ତି ତିଆରି କରିବାଟା ପିଲାଖେଳ ନୁହେଁ । ତା'ପରେ ମୋ ହାତରୁ ପରିଚାଳନା ଦାୟିତ୍ୱ ଚାଲିଗଲା ପରେ ମୁଁ ଆଉ କାହିଁକି ମୁଣ୍ଡ ଖେଳେଇବି ?

ମହାସେବକ - ଆପଣ କୁହନ୍ତୁ, ମହାରାଜ । କେତେଦିନ ଈଶ୍ୱର ଏଇମିତି ସାଥୀହୀନ ହୋଇ ନିଃସଙ୍ଗ ଜୀବନଯାପନ କରିଥାନ୍ତେ ? ତାଙ୍କ ବିରହ ଯନ୍ତ୍ରଣା ପ୍ରବଳ ହେବାରୁ ଶେଷରେ ସେ ଏମିତି କାଣ୍ଡଟାଏ କରି ବସିଲେ ।

ମହାପୂଜକ - ନା'... ! ତାହା କେବେ ହୋଇପାରେନା ।

ପ୍ରଶାସକ - ଜଗତର ସୃଷ୍ଟିକର୍ତ୍ତା କେବେ ଏତେବଡ଼ ନୀଚ କାମ କରିପାରିବେନି । ଏଇଟା ଗୋଟାଏ ଚକ୍ରାନ୍ତ । ଗୋଟାଏ ବିଧିବଦ୍ଧ ଷଡ଼ଯନ୍ତ୍ର ।

ମହାପୂଜକ - ଈଶ୍ୱରଙ୍କୁ ବଦନାମ କରିବାପାଇଁ ଏଇଟା ଗୋଟାଏ ଅପପ୍ରଚାର ।

ମହାସେବକ - କିନ୍ତୁ କ'ଣ ପାଇଁ ? ଈଶ୍ୱରଙ୍କୁ କିଏ କାହିଁକି ବଦ୍‌ନାମ କରିବ ? ସିଏତ କାହାରି କିଛି କ୍ଷତି କରିନାହାଁନ୍ତି !

ମହାପୂଜକ - ତେବେ କ'ଣ ପାଇଁ ଏଭଳି ଏକ ବିଭତ୍ସ ଘଟଣାର ପ୍ରଚାର ଘଟିଛି ?

ମହାସେବକ - ସେହି ବିଷୟରେ ସବୁଆଡ଼େ ଚର୍ଚ୍ଚା ।

ରାଜା - ମହାସେବକ, ତମେ କିଛି ଅନୁମାନ କରିପାରୁଛ ? ଏଇଟା ମଧ୍ୟ କାହାର ଷଡ଼ଯନ୍ତ୍ର ହୋଇପାରେ !

ମହାସେବକ - ମହାରାଜ, ଆପଣ ତ ଭଲଭାବେ ଜାଣନ୍ତି, ମୂଳରୁ ମୁଁ ଅବିବାହିତ । ସେ ବିଷୟ ବାସନା ଉପରେ ମୋର ଧାରଣା ଆଦୌ ନାହିଁ । ତେଣୁ କେମିତି କହିବି ?

ପ୍ରଶାସକ - କାନରୁ କାନ ହୋଇ ଏ ଘଟଣା ବ୍ୟାପିଯିବ ।

ମହାସେବକ - ଈଶ୍ୱରଙ୍କ ବଇଁଶୀ, ତା'ପରେ ଯେ ଉତ୍ତରୀୟଟା ନ ମିଳିଥିଲେ କେଜାଣି କାହିଁକି ସେ ଖସି ଯାଇଥାନ୍ତେ । ହେଲେ ଏ ଜିନିଷ ଦି'ଟା ତାଙ୍କୁ ମହା ମୁସ୍କିଲରେ ପକାଇଛି ।

ରାଜା - କେହି ହୁଏତ ମେରୀର ଶବ ପାଖରେ ଏ ଦୁଇଟି ଜିନିଷକୁ ପକାଇଦେଇ ଥାଇପାରେ !

ମହାପୂଜକ - ଆଉ ସେ ବ୍ୟକ୍ତି ନିଶ୍ଚୟ ଈଶ୍ୱର ନିବାସର ।

ପ୍ରଶାସକ - ଏହା କେବେ ସାଧାରଣ ମଣିଷର କାମ ନୁହେଁ ।

ରାଜା - ମହାସେବକ, ତମେ କାହାକୁ ସନ୍ଦେହ କରୁଛ ?

ମହାସେବକ - ଈଶ୍ୱରଙ୍କ ଛଡ଼ା ଏ କାମ ଆଉ କାହାରି ନୁହେଁ ।

ତିନିହେଁ - 'ନା'... ! *(ଚିତ୍କାର କରିଉଠିଛନ୍ତି ତିନିହେଁ ଏକ ସଙ୍ଗରେ । ଧୀରେ ଧୀରେ ମଞ୍ଚ ଅନ୍ଧକାର ହୋଇଛି ।)*

# ଦଶମ ଦୃଶ୍ୟ

*(ଭୋର ସମୟ । ଈଶ୍ୱର ନିବାସର ମୁଖଶାଳା । ଦ୍ୱାରଦେଶରେ ସେମିତି ବିଷର୍ଣ୍ଣ ଅବସ୍ଥାରେ ବସି ରହିଥାଏ ଯୋଶେଫ୍ । କେହି ଭିକାରୀ ବସିଛି ଭାବି ଲୋକେ କିଛି ପଇସା ତା'ପାଖରେ ଫିଙ୍ଗିଦେଇ ଯାଇଛନ୍ତି । ମେରୀକୁ ଚାହିଁ ବସିଥାଏ ଯୋଶେଫ୍ । ଆଲୋକ ଆସିବା ମାତ୍ରେ ଦେଖାଗଲା, ଈଶ୍ୱରଙ୍କ ହାତରେ ଥିଲା ମେରୀର ଶବ । ସେ ଠିଆ ହୋଇଥିଲେ ଯୋଶେଫ୍ ସମ୍ମୁଖରେ ।)*

ଈଶ୍ୱର - ଯୋଶେଫ୍... ଯୋଶେଫ୍-

ଯୋଶେଫ୍ - କିଏ ? ମେରୀ, ତୁ ଏତେ ଡେ଼ରି କରିଦେଲୁ ? ତତେ ଚାହିଁ ଚାହିଁ ମୋ ଆଖିରୁ ପାଣି ମଲାଣି । ଯାହାକୁ ପଚାରୁଛି, କେହି କିଛି ଉତ୍ତର ଦଉନାହାନ୍ତି ।

ଈଶ୍ୱର - (ନିରୁତ୍ତର । ଅନବରତ ଆଖିରୁ ବହୁଥାଏ ଲୁହଧାର)

ଯୋଶେଫ୍ - ତମେ କାନ୍ଦୁଛ କାହିଁକି ବାବୁ ? ମୋ ମେରୀକୁ ଆଣିଛ... ଆଉ ମୋର କିଛି ଦରକାର ନାହିଁ । (ଈଶ୍ୱର ମେରୀର ଶବକୁ ଯୋଶେଫ୍

କୋଳରେ ଶୁଆଇ ଦେଇଛନ୍ତି । ଯୋଶେଫ୍ ତାକୁ ଶବ ଭାବରେ ଗ୍ରହଣ କରିପାରିନି । ସେ ଭାବିଛି ତା'କୋଳରେ ମେରୀ ଯେମିତି ଶୋଇଛି ।)

ଯୋଶେଫ୍ - ମେରୀ... ମେରୀ... ୟେ' ମେରୀ... । ଉଠ୍... ଆଉ ଘଡ଼ିକ ପରେ ରାତି ପାହିଯିବ । ଆମେ ଆମ ସ୍ଥାନକୁ ଫେରିଯିବା ।

ଈଶ୍ୱର - ମେରୀ ଆଉ କେବେ ଉଠିବନି ଯୋଶେଫ୍ । ସେ ସବୁଦିନ ପାଇଁ ଶୋଇଯାଇଛି ।

ଯୋଶେଫ୍ - କାହିଁକି ବାବୁ ? କ'ଣ ହେଇଛି ତା'ର ?

ଈଶ୍ୱର - ମୁଁ ତୋ ପାଇଁ କିଛି କରିପାରିଲି ନାହିଁ ଯୋଶେଫ୍ ।

ଯୋଶେଫ୍ - ତମେ କିଏ ବାବୁ ? ପରିଚୟ ତ ଦେଲ ନାହିଁ ।

ଈଶ୍ୱର - ମୁଁ ଈଶ୍ୱର । ଯାହାକୁ ଦର୍ଶନ କରିବାପାଇଁ ତମେ ଦିହେଁ ଏତେ ଦୂରରୁ ଦଉଡ଼ି ଆସିଥିଲ ।

ଯୋଶେଫ୍ - (ନୀରବରେ କିଛି ସମୟ ରହିଛି । ପୁଣି ଚାହିଁଛି ମେରୀକୁ)

ଈଶ୍ୱର - ମୁଁ ଅପରାଧୀ, ଯୋଶେଫ୍ । ଭଗବାନ ହୋଇ ଯେତେବେଳେ ନିଜର ଭକ୍ତକୁ ରକ୍ଷା କରିପାରିଲି ନାହିଁ, ସେତେବେଳେ ମୋ ପରିଚୟ ମୂଲ୍ୟହୀନ ।

ଯୋଶେଫ୍ - କିନ୍ତୁ କାହିଁକି, ପ୍ରଭୁ ? କାହିଁକି... କାହିଁକି... ? (କରୁଣ ସ୍ୱର)

ଈଶ୍ୱର - ମୁଁ ଜାଣେ ଯୋଶେଫ୍, ତମ ପ୍ରାଣରେ ଖୁବ୍ ଶକ୍ତ ଆଘାତ ଲାଗିଛି । ଏଭଳି ଆଘାତ ପରେ କେହି କ'ଣ କେବେ ସୁସ୍ଥ ରହିପାରେ ।

ଯୋଶେଫ୍ - ହେଲେ - ?

ଈଶ୍ୱର - ଆଉ ପ୍ରଶ୍ନ କରନି, ଯୋଶେଫ୍ । ମୁଁ ଆଜି ହାରିଯାଇଛି । ଏ କଳେବର ନେଇ ମୁଁ ଆଉ କେବେ ସେ ଈଶ୍ୱର ନିବାସକୁ ଯାଇପାରିବି ନାହିଁ । ହଁ, ଯୋଶେଫ୍ ତମେ ଆଉ କେବେ ସେ ଈଶ୍ୱର ନିବାସରେ ପୂଜା ପାଉଥିବା ସେ ପଥରର ମୂର୍ତ୍ତିଟା ପାଖକୁ

*ଆସିବ ନାହିଁ... (ଝଡ଼ ବେଗରେ ସେଠାରେ ପହଞ୍ଚି ମହାସେବକ । ବ୍ୟଙ୍ଗ କରି ଚାହିଁଛି ଈଶ୍ୱରଙ୍କୁ)*

ମହାସେବକ - ବାଃ ବାଃ ଈଶ୍ୱର ! ତମପାଇଁ ଚିରଦିନ ଲାଗି ଈଶ୍ୱର ନିବାସ ବନ୍ଦ ହୋଇଯାଇଛି । କାରଣ ତମେ ବିଧର୍ମୀର ଶବକୁ ଛୁଇଁଛ । ତମେ କଳୁଷିତ ହୋଇଯାଇଛ ଈଶ୍ୱର ।

ଈଶ୍ୱର - ମହାସେବକ, ତମରିମାନଙ୍କ ଗର୍ବ ଚୂର୍ଣ୍ଣ ପାଇଁ ମୁଁ ପୁଣିଥରେ ଅବତାର ଗ୍ରହଣ କରିବି । ସୃଷ୍ଟିର ମଙ୍ଗଳ ଲାଗି ମୁଁ ହେବି ଅବତାରୀ ।

ମହାସେବକ - ହେଲେ ଈଶ୍ୱର ନିବାସ ତମ ପାଇଁ ନିଷିଦ୍ଧ । ତମେ ଆଉ କେଉଁଠି ପୂଜା ପାଇପାର, ହେଲେ ଏଠି ନୁହେଁ ।

ଈଶ୍ୱର - ଯେଉଁଠି ପୂଜକ ସେବକମାନଙ୍କର ଦୌରାତ୍ମ୍ୟ, ସେଭଳି ସ୍ଥାନକୁ ମୁଁ ଘୃଣା କରେ ।

*ଘୋଷଣା - ୨୦୧୬ ମସିହା ଜୁଲାଇ ୧୭ ତାରିଖ ଗୁଣ୍ଡିଚା ଯାତ୍ରା ଶେଷ ପର୍ଯ୍ୟାୟ ନୀଳାଦ୍ରିବିଜେରେ ବିଶୃଙ୍ଖଳା ସବୁ ସୀମା ସରହଦ ଟପିଯାଇଛି । ପରିବାରଲୋକଙ୍କୁ ରଥ ଉପରକୁ ଚଢାଇବା ନେଇ ସେବାୟତମାନେ ଯେଉଁ ଆହ୍ୱାନ ଦେଇଥିଲେ ସେହି ଜିଦ୍‌କୁ ପୂରଣ କରିବା ଲାଗି ଆଜି ସେମାନେ ଦାଦାଗିରି ଦେଖାଇଛନ୍ତି । ଏତେ ଆସ୍ପର୍ଦ୍ଧାଯେ ଚକ୍ରରାଜ ଶ୍ରୀସୁଦର୍ଶନଙ୍କୁ ଚାରମାଳ ଉପରେ ଘଣ୍ଟାଏ କାଳ ଛିଡ଼ା କରାଇଦେଇଥିଲେ । ପହଣ୍ଡି ପ୍ରକ୍ରିୟା ବନ୍ଦ ହୋଇଯାଇଥିଲା ପ୍ରାୟ ଘଣ୍ଟାଏ କାଳ । x x x ରଥଯାତ୍ରା ବେଳେ ମଧ୍ୟ ଜିଲ୍ଲାପାଳ ଶ୍ରୀ ଅଗ୍ରୱାଲ୍‌ଙ୍କୁ ସେବାୟତଙ୍କ ଠେଲାପେଲା ଗାଳିଗୁଲଜ ଜଗନ୍ନାଥପ୍ରେମୀମାନଙ୍କୁ ବ୍ୟଥିତ କରିଛି । ଖୋଦ୍ ଆଇନମନ୍ତ୍ରୀ ଏବଂ ରାଜ୍ୟ ପ୍ରଶାସନ ଏହାର ନୀରବଦ୍ରଷ୍ଟା ସାଜିଥିଲା ।*

ମହାସେବକ - ଏଣିକି ବିନା ଈଶ୍ୱରରେ ଈଶ୍ୱର ନିବାସ ପରିଚାଳିତ ହେବ । ପଥର ମୂର୍ତ୍ତିଟା ଥିଲା ପର୍ଯ୍ୟନ୍ତ ତମର ଆଉ କୌଣସି ଆବଶ୍ୟକତା ନାହିଁ, ଈଶ୍ୱର ।

ଈଶ୍ୱର - ହେଲେ ମୋର ନବକଳେବର ଅବଶ୍ୟମ୍ଭାବୀ । ଯୁଗର ସଙ୍କେତକୁ ତମେ କେବେ ରୋଧି ପାରିବ ନାହିଁ, ମହାସେବକ ।

ମହାସେବକ - ସେଦିନ ହୁଏତ ଆଉ କେବେ ଆସିବ ନାହିଁ ଈଶ୍ୱର । (ଯୋଶେଫ୍ ମୂକ ଭଳି ସେମାନଙ୍କ ତର୍କ ଶୁଣି ଚାଲିଥିଲା)

ଈଶ୍ୱର - ମନେରଖ ମହାସେବକ । ମୋ ଅନ୍ତେ ଈଶ୍ୱର ନିବାସ ହେବ ଗୃଧ୍ର ପେଚକର ବାସଭବନ । କେତେଦିନ ଧର୍ମ ନାମରେ ମୋର ପ୍ରଚ୍ଛଦପଟ୍ଟ ବିକି ଜନତାଙ୍କୁ ଭୂଆଁ ବୁଲାଇବ ? ଯେଉଁଦିନ ଜନତା ଜାଣିବେ, ଯେ ମନ୍ଦିରର ପଥର ମୂର୍ତ୍ତି କେବଳ ପଡ଼ି ରହିଛି ସେବକ ପୂଜକମାନଙ୍କର ଉଦର ପୂର୍ତ୍ତି ପାଇଁ, ସେଦିନ ତମ ଅଦଉତିର ଶେଷ ହେବ, ମହାସେବକ ।

ମହାସେବକ - ମଥାରେ ଚନ୍ଦନ, ମୁଖରେ ମନ୍ତ୍ର ଥିବା ପର୍ଯ୍ୟନ୍ତ ଜନତା ଆମକୁ ସମ୍ମାନ ଜଣାଇବା ପାଇଁ ବାଧ୍ୟ । ଆମେ ସେବକ... ସମାଜର ତ୍ରାଣକର୍ତ୍ତା... ଈଶ୍ୱରଙ୍କ ଚଳନ୍ତି ଅବତାର ହାଃ... ହାଃ... ହାଃ *(ଖୁବ୍ ଜୋର୍‌ରେ ହସିଉଠିଛି । ଭୟରେ ମେରୀକୁ କୁଣ୍ଢାଇ ଧରିଛି ଯୋଶେଫ୍ । ସେହି ତାସଲ୍ୟ ଭିତରେ ଧିରେ ଧିରେ ଈଶ୍ୱର ଅପସରି ଯାଇଛନ୍ତି । ନଇଁ ଆସିଛି ଅନ୍ଧାର ।)*

# ଏକାଦଶ ଦୃଶ୍ୟ

*(ସମୟ ଦିବସ । ଯୋଶେଫ୍ ମନ ଦୁଃଖରେ ବସିଥିଲେ । ତାଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲେ ସୁଲେମାନ୍, ଇସଲାମ ଧର୍ମର ନେତା । ମାତ୍ର ଏସବୁ ଯୋଶେଫ୍‌ଙ୍କ ଉପରେ କୌଣସି ପ୍ରଭାବ ପକାଉ ନ ଥିଲା । ତଥାପି ନିଜର ପ୍ରଚେଷ୍ଟା ସୁଲେମାନ ଅବ୍ୟାହତ ରଖିଥିଲେ ।)*

ସୁଲେମାନ - ଏଇଟା ଭାଙ୍ଗି ପଡ଼ିବାର ବେଳ ନୁହେଁ, ଯୋଶେଫ୍ । ତମକୁ ଉଠିବାକୁ ପଡ଼ିବ । ଆମକୁ ପ୍ରତିଶୋଧ ନେବାକୁ ହେବ ।

ଯୋଶେଫ୍ - ଲାଭ କ'ଣ ହେବ, ସୁଲେମାନ ? ମୋ ମେରୀ ତ ଆଉ ଫେରି ଆସିବ ନାହିଁ ?

ସୁଲେମାନ - ଗୋଟିଏ ମେରୀ ଯାଇଛି । ହେଲେ ଏବେବି ଏ ମାଟିରେ ଆହୁରି ହଜାର ହଜାର ମେରୀ ତମରି ବାଟ ଚାହିଁ ବସିଛନ୍ତି । ତମେ କ'ଣ ଚାହଁ, ସେମାନେ ସେହି ପୂତିଗନ୍ଧମୟ ନର୍କର ଯନ୍ତ୍ରଣା ଭୋଗ କରନ୍ତୁ ?

ଯୋଶେଫ୍ - ସୁଲେମାନ, ଥରେ ମେରୁଦଣ୍ଡ ଭାଙ୍ଗିଗଲେ ପ୍ରାଣୀ ଆଉ ସିଧା ହୋଇ ଚାଲିପାରେନି ।

ସୁଲେମାନ - ନା', ଯୋଶେଫ୍... ନା'... ! ତମକୁ ଏ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ହେବ । କେବଳ ମେରୀ ପାଇଁ... ଖ୍ରୀଷ୍ଟ ଧର୍ମର ହକ୍ ପାଇଁ... ମଣିଷକୁ ମଣିଷ ଭଳି ସମ୍ମାନ ଦେବା ପାଇଁ ।

*ଘୋଷଣା - ୧୯୯୯ ମସିହା ଜାନୁଆରୀ ୨୨ ତାରିଖ ରାତିରେ କେନ୍ଦୁଝର ଜିଲ୍ଲାର ଏକ ଆଦିବାସୀ ବହୁଳ ଗ୍ରାମ ମନୋହରପୁରରେ ଅଷ୍ଟ୍ରେଲୀୟ ପାଦ୍ରୀ ଗ୍ରାହାମଷ୍ଟେନ୍ସ ତାଙ୍କ ଦୁଇ ପୁତ୍ର ଫିଲିପ୍ ଟିମୋଥିଙ୍କ ସହ ଏକ ଖ୍ରୀଷ୍ଟିଆନ୍ କ୍ୟାମ୍ପରେ ଯୋଗ ଦେବାକୁ ଆସି ସେମାନେ ଷ୍ଟେସନ୍‌ୱାଗନ ଭିତରେ ଶୋଇ ଯାଇଥିଲେ । ମଧ୍ୟ ରାତ୍ରିରେ ଦାରା ସିଂ ନେତୃତ୍ୱରେ ୩୦/୪୦ ଜଣ ଧନୁତୀର ଲାଠିରେ ସଜ୍ଜିତ ହୋଇ ଗାଡ଼ିତଳେ ନଡ଼ା ବିଛାଇ ନିଆଁ ଲଗାଇଦେଇଥିଲେ । ପରଦିନ ପୋଡ଼ାଗାଡ଼ିରୁ ସକାଳୁ ୩ଟି ଅଙ୍ଗାର ହୋଇଯାଇଥିବା କଂକାଳକୁ ଉଦ୍ଧାର କରାଯାଇଥିଲା ।*

ଯୋଶେଫ୍ - ଯେତେ ମନା କରିଥିଲି, ମୋ କଥା ଶୁଣିଲା ନାହିଁ । ଆସିଥିଲା ଈଶ୍ୱରଙ୍କୁ ଦର୍ଶନ କରିବା ପାଇଁ...

ସୁଲେମାନ - ଯୋଶେଫ୍, ଅତୀତ କଥା ଭୁଲିଯାଅ । ବର୍ତ୍ତମାନ ପାଇଁ ପ୍ରସ୍ତୁତ ହୁଅ । ମାଟି ଯେତେବେଳେ ଆମଠୁଁ ସଂଗ୍ରାମ ଚାହୁଁଛି, ଆମେ ସେତେବେଳେ ନୀରବ ହେଲେ ଚଳିବନି ।

ଯୋଶେଫ୍ - ପୋଡ଼ିଗଲା ତିଅଣରେ ଆଉ କ'ଣ ସୁଆଦ ଅଛି ?

ସୁଲେମାନ - ତମେ କାହିଁକି ଭାବୁଛ ଯୋଶେଫ୍, ଏଇଟା ଗୋଟାଏ ବ୍ୟକ୍ତିଗତ ସମସ୍ୟା ବୋଲି ? ଆଜି ଖ୍ରୀଷ୍ଟଧର୍ମ ପ୍ରତି ସେମାନେ ଅବିଚାର କରିଛନ୍ତି । କାଲି ଇସଲାମ୍ ଧର୍ମ ପ୍ରତି କରିବେ । ତା'ପର ଦିନ ଶିଖ୍ ଧର୍ମର ଅବମାନନା କରିବେ । କେତେଦିନ ଅନ୍ୟର ଚାବୁକ ମାଡ଼ ଖାଇ ବଞ୍ଚିବା ?

ଯୋଶେଫ୍ - ସଂଖ୍ୟାଗରିଷ୍ଠ ହିନ୍ଦୁ ଧର୍ମ ବିରୁଦ୍ଧରେ ବିଦ୍ରୋହ କରି ଆମେ ତିଷ୍ଠି ପାରିବା ତ ?

ସୁଲେମାନ - ବିଜୟ ପରାଜୟ କାଳର ଅଧୀନ । ତେବେ ଆମେ ଆମ କର୍ତ୍ତବ୍ୟରେ ଅବହେଳା କାହିଁକି କରିବା ? ଦେହରେ ଶେଷ ରକ୍ତ ବିନ୍ଦୁ ଥିବା ପର୍ଯ୍ୟନ୍ତ ଲଢ଼ିବା । ପ୍ରଥମେ ଆମେ ନିଜ ଭିତରେ ଏକତା ଆଣିବା । ଆଉ ତା'ପରେ, ବିଜୟ ନିଶ୍ଚିତ ।

ଯୋଶେଫ୍ - କହିବା ଆଉ କରିବା ଭିତରେ ଅନେକ ଫରକ ।

ସୁଲେମାନ - ଜୀବନରେ ହାରିଯିବାର ସ୍ୱପ୍ନ ଦେଖି କେହି କେବେ ଉଠି ପାରିନି । ତେଣୁ ନିଜ ଭିତରର ଅନ୍ତଃସତ୍ତାକୁ ଥରେ ଆଲୋକର ସନ୍ଧାନରେ ଛାଡ଼ିଦିଅ । ସଂଖ୍ୟାଲଘୁ ସମ୍ପ୍ରଦାୟ ଲୋକଙ୍କର କ'ଣ ନିଜତ୍ୱ କିଛି ନାହିଁ ? ସେମାନେ କ'ଣ ମଣିଷ ନୁହଁନ୍ତି ?

ଯୋଶେଫ୍ - 'ସଂଖ୍ୟାଲଘୁ' । ସୁଲେମାନ, ମୋ ଭିତରେ ଗୋଟାଏ ଅହେତୁକ ସ୍ପନ୍ଦନ କାହିଁକି ?

ସୁଲେମାନ - ସେ ସ୍ପନ୍ଦନ ଆଜି ଅଧିକାର ଚାହେଁ । ତାକୁ ତମେ ଉର୍ଦ୍ଧ୍ୱମୁଖୀ କରାଅ, ଯୋଶେଫ୍ । 'ଅଧିକାର' କାହାରି ହାତଟେକା ଦାନ ଉପରେ ନିର୍ଭର କରେନି । ତାକୁ ଜୋର୍ କରି ଛଡ଼ାଇ ଆଣିବାକୁ ହୁଏ । ଜାଗ ଯୋଶେଫ୍ ଜାଗ .... ।

ଯୋଶେଫ୍ - ହଁ... ହଁ... ମୁଁ ପାରିବି ସୁଲେମାନ୍ । ମୁଁ ନିଶ୍ଚୟ ପାରିବି ।

ସୁଲେମାନ - ସାବାସ୍... ବନ୍ଧୁ... ସାବାସ୍ । ମୁଁ ଜାଣିଥିଲି, ତମ ଭିତରେ ଶୋଇ ରହିଥିବା ଚେତନା ଥରେ ଜାଗ୍ରତ ହେଲେ, ତାକୁ କେହି ଅଟକାଇ ରଖିପାରିବେ ନାହିଁ ।

ଯୋଶେଫ୍ - କିନ୍ତୁ ଉପାୟ କାହିଁ ?

ସୁଲେମାନ - ଧର୍ମ ନାମରେ... ସମ୍ପ୍ରଦାୟ ଭିତ୍ତିରେ ସବୁକିଛି ସମ୍ଭବ । ଆଗକୁ ଇଲେକ୍ସନ ଅଛି । ଆଜିଠାରୁ ହିଁ ଆମର ପ୍ରସ୍ତୁତି ଆବଶ୍ୟକ ।

ଯୋଶେଫ୍ - ମାନେ ?

ସୁଲେମାନ - ଏଥର ଇଲେକ୍ସନରେ ଆଉ ସର୍ବସମ୍ମତ ପ୍ରାର୍ଥୀ ଚୟନ ସମ୍ଭବ ନୁହେଁ । ଏହି ମ୍ୟୁନିସିପାଲିଟି ଇଲେକ୍ସନ ହିଁ ଆସେମ୍ବ୍ଲି ଆଉ

ପାର୍ଲାମେଣ୍ଟ ଇଲେକ୍ସନକୁ ପ୍ରଭାବିତ କରିବ । ଖ୍ରୀଷ୍ଟିଆନ୍ ଆଉ ମୁସଲିମ୍ ଭୋଟ କେବେବି ହିନ୍ଦୁ ଧର୍ମକୁ ଯିବ ନାହିଁ ।

ଯୋଶେଫ୍ - ଏଥରର ଭୋଟ ଦୁଇଭାଗ ନିଶ୍ଚିତ ହେବ । ଏ ଇଲେକ୍ସନରେ ଏଥର ଈଶ୍ୱର ନିବାସର ମହାସେବକ ପ୍ରାର୍ଥୀ । ସେ ଧରି ନେଇଛି, ଧର୍ମ ନାମରେ ସବୁଯାକ ଭୋଟ ମାରିନେବ ।

ସୁଲେମାନ୍ - ତା' ପୂର୍ବରୁ ଆମ ସଂଖ୍ୟାଲଘୁ ସମ୍ପ୍ରଦାୟର ଭୋଟରମାନେ ତମର କରୁଣ କାହାଣୀ ଶୁଣିଲେ ତାକୁ ଭୋଟ ମିଳିବା ଦୂରେଥାଉ, ଢେ଼ଲା ପଥର ରଖିବାକୁ ଯାଗା ମିଳିବନି ।

ଯୋଶେଫ୍ - କି ସୁନ୍ଦର ଆଇଡ଼ିଆ ।

ଉଭୟ- ଆଲ୍ଲା ଯୀଶୁ ଜିନ୍ଦାବାଦ୍...

(ହାତ ମିଳାଇଛନ୍ତି ଉଭୟ)

# ଦ୍ୱାଦଶ ଦୃଶ୍ୟ

*(ସମୟ ଦିବସ । ନିର୍ବାଚନ ରଣାଙ୍ଗନ । ପ୍ରାର୍ଥୀମାନଙ୍କର ବିଭିନ୍ନ କଳ-କୌଶଳ ପ୍ରଦର୍ଶନ । ଉଭୟ ପ୍ରାର୍ଥୀ ମହାସେବକ ଏବଂ ସୁଲେମାନ ନିଜ ନିଜର ସପକ୍ଷରେ ଭୋଟ ଦେବାପାଇଁ ଭୋଟରମାନଙ୍କୁ ଆହ୍ୱାନ ଦେଉଥାନ୍ତି । ଅନ୍ତରାଳରୁ ଉଭୟ ପ୍ରାର୍ଥୀଙ୍କୁ ବିପୁଳ କରତାଳି ସାଙ୍ଗକୁ ସମର୍ଥନ ମିଳୁଥାଏ । ମଞ୍ଚର ସମ୍ମୁଖ ଭାଗରେ ଉଭୟ ପାଖରେ ପ୍ରଚାର ଭଙ୍ଗୀରେ ରହିଛନ୍ତି ।)*

ମହାସେବକ - ଭାଇମାନେ, ମୋର ବିଜୟ ଜନତାର ବିଜୟ । ମୋର ବିଜୟ ସ୍ୱୟଂ ଈଶ୍ୱରଙ୍କ ବିଜୟ । ଆପଣମାନେ ଭଲଭାବରେ ଜାଣନ୍ତି, ଏ ସହର ପାଇଁ ମୁଁ କ'ଣ ନ କରିଛି ! ଈଶ୍ୱର ନିବାସ ପାଇଁ ମୁଁ କ'ଣ ନ କରିଛି ! ଆପଣମାନଙ୍କ ପାଇଁ ମୁଁ କ'ଣ ନ କରିଛି ! (ଅନ୍ତରାଳରୁ କରତାଳି ଦ୍ୱାରା ସମର୍ଥନ)

ସୁଲେମାନ - ଭାଇମାନେ, ମୁଁ ଆପଣଙ୍କୁ ଭୋଟ ମାଗୁନି । ମୁଁ ମାଗୁଛି ନ୍ୟାୟ । ଆପଣମାନେ କୁହନ୍ତୁ, ଧର୍ମ ନାମରେ କେତେଦିନ ଧରି ବ୍ୟଭିଚାର ଚାଲିଥିବ ? ସେଦିନ ମେରୀର ଇଜ୍ଜତ ଲୁଣ୍ଠନ କରି ତା'ର ଶବକୁ ସମୁଦ୍ର ବାଲିରେ ଫିଙ୍ଗି ଦିଆଗଲା । ହେଲେ

ସବୁଠୁ ଏ ଦୁଃଖଦାୟକ ହେଉଛି, ଘଟଣାର କାଳିମାକୁ ଈଶ୍ୱରଙ୍କ ନାମରେ ବୋଳି ଦିଆଗଲା । ଆପଣମାନେ କୁହନ୍ତୁ ଯେଉଁ ଈଶ୍ୱର ନିବାସ ସତ୍ୟ ଧର୍ମ ନ୍ୟାୟ ପାଇଁ ମୁଣ୍ଡ ଟେକି ଠିଆ ହୋଇଛି, ସେଠି କ'ଣ ଅନୀତି ହୋଇପାରେ ? ଈଶ୍ୱର ଆମ ସମସ୍ତଙ୍କର । ସେ ହିନ୍ଦୁର ନୁହଁନ୍ତି... ମୁସଲମାନଙ୍କର ନୁହଁନ୍ତି... କି କେବଳ ଖ୍ରୀଷ୍ଟିଆନମାନଙ୍କର ନୁହଁନ୍ତି । ସେ ସକଳ ମାନବ ସମାଜର... । (ଅନ୍ତରାଳରୁ କରତାଳି ଦ୍ୱାରା ସମର୍ଥନ)

ଘୋଷଣା – *୨୦୧୫ ମସିହା ସେପ୍ଟେମ୍ବର ୩୦ ତାରିଖ ଦିନ ଉତ୍ତରପ୍ରଦେଶର ଦାଦରୀ ନିକଟସ୍ଥ ବିସଡ଼ା ଗ୍ରାମରେ ହୁଙ୍କାଶବ୍ଦରୁ ଉର୍ଦ୍ଧ୍ୱଲୋକ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ଏକ ମୁସଲିମ୍ ପରିବାର ଉପରେ ଅତର୍କିତ ଆକ୍ରମଣ କରିଥିଲେ । ପରିବାରର ୫୦ ବର୍ଷୀୟ ଅକଲାଖଙ୍କୁ ସେମାନେ ପିଟି ପିଟି ମାରିଦେଇଥିଲେ ଓ ତାଙ୍କର ପୁତ୍ର ଡାନିସ୍ ମଧ୍ୟ ଗୁରୁତର ଭାବେ ଆହତ ହୋଇଥିଲେ । ଅଭିଯୋଗ ହୋଇଥିଲା ଯେ ଏହି ପରିବାର ଗୋ ହତ୍ୟା କରି ମାଂସ ବିକ୍ରି କରୁଛନ୍ତି । ସରକାରୀ ତଦନ୍ତରୁ ଘଟଣାଟି ମିଥ୍ୟା ବୋଲି ଜଣାପଡ଼ିଥିଲା । ଉତ୍ତରପ୍ରଦେଶ ସରକାର ଘଟଣାରେ ଦୁଃଖ ପ୍ରକାଶ କରିବା ସହିତ ଏହି ପରିବାର ପାଇଁ ୧୦ ଲକ୍ଷ ଟଙ୍କାର ଅନୁକମ୍ପା ରାଶି ଘୋଷଣା କରିଛନ୍ତି ।*

ମହାସେବକ – ଭାଇମାନେ, ଆଜୀବନ ଯେ ଅବିବାହିତ ରହି ଆପଣଙ୍କମାନଙ୍କର ସେବା କରି ଆସିଛି... ଈଶ୍ୱରଙ୍କ ସେବା କରି ଆସିଛି... ଦୁଃସ୍ଥଜନତାର ସେବା କରି ଆସିଛି, ତାକୁ କ'ଣ ଆପଣମାନେ ଚିହ୍ନି ନାହାଁନ୍ତି ? ଜନତାର ସେବକ... ଈଶ୍ୱରଙ୍କ ସେବକ... ୟେ' ମହାସେବକ । ଆପଣମାନେ ମୋତେ ସେବାର ଅଧିକାର ଦେଇଛନ୍ତି । ଆପଣମାନେ ଯଦି ଭାବୁଥାନ୍ତି ଈଶ୍ୱରଙ୍କ ମହାସେବକ ୟେ ନିର୍ବାଚନ ରଣାଙ୍ଗନରେ ସବୁଠାରୁ ଅଯୋଗ୍ୟ ପ୍ରାର୍ଥୀ, ତା'ହେଲେ ମୁଁ ଆଜି ମୋର ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବାକୁ ପ୍ରସ୍ତୁତ । (କରତାଳି ଦ୍ୱାରା ସମର୍ଥନ ଏବଂ "ମହାସେବକ"... "ଜିନ୍ଦାବାଦ"... ଧ୍ୱନି ଶୁଭିଛି)

ସୁଲେମାନ - ଭାଇମାନେ ମୁଁ ଆପଣମାନଙ୍କୁ ସ୍ମରଣ କରାଇ ଦେଉଛି, ସେହି ନିଷ୍ପାପ ମହିଳା ମେରୀ କଥା । ଈଶ୍ୱରଙ୍କ ଦର୍ଶନ ପାଇଁ ଆସି ସେ କ'ଣ ପାଇଲା ? ସେ ଖ୍ରୀଷ୍ଟିଆନ ନୁହେଁ, ସେ ସମସ୍ତ ମାନବ ଜାତିର ଭଗିନୀ... ଜନନୀ... ଜାୟା... ! କାଲି ଯଦି ହିନ୍ଦୁ ଧର୍ମରେ ଏଇ ଘଟଣା ଘଟିଥାନ୍ତା, ଆପଣମାନେ କ'ଣ ଦୋଷୀକୁ କ୍ଷମା ଦେଇଥାନ୍ତେ ? ଆପଣମାନେ ଥରେ ଭାବି ଦେଖନ୍ତୁ । ଏ ଘଟଣାର ମୁଖ୍ୟ ନାୟକ କିଏ ? କାହା ଦ୍ୱାରା ଏ ଘଟଣା ପ୍ରଥମେ ପ୍ରଚାରିତ ହେଲା ? ରାତିର ଅନ୍ଧାରରେ ଝିଅ ବୋହୂଙ୍କର ଇଜ୍ଜତ ଲୁଣ୍ଠନ କରୁଥିବା ବ୍ୟକ୍ତି, ଯଦି ଦିନରେ ଗୀତା, ଭାଗବତ, ବାଇବେଲ, କୋରାନର ବାଣୀ ଶୁଣାଏ, ତା'ହେଲେ ଆପଣମାନେ କ'ଣ ତାକୁ ସ୍ୱାଗତ କରିବେ ? କୁହନ୍ତୁ... ଜବାବ ଦିଅନ୍ତୁ... । (ଅନ୍ତରାଳରୁ ଶୁଭିଛି - "ଆମର ପ୍ରାର୍ଥୀ ସୁଲେମାନ ଭାଇ - ଜିନ୍ଦାବାଦ")

ମହାସେବକ - ବନ୍ଧୁଗଣ, ମୋର ବିରୋଧୀ ପ୍ରାର୍ଥୀ ମୋ ଚରିତ୍ର ନେଇ ବହୁ ଟୀକା ଟିପ୍ପଣୀ ଦେଇଛନ୍ତି । ମୋ ଚରିତ୍ର କ'ଣ ତାହା ଆପଣ ଭଲଭାବେ ଜାଣନ୍ତି । ଆଜୀବନ ବ୍ରହ୍ମଚର୍ଯ୍ୟ ପାଳନ କରି ଆସିଥିବା ଏଇ ମହାସେବକର ଚରିତ୍ର ଯଦି କଳଙ୍କିତ, ତେବେ ଆଦୌ ମୋତେ ଭୋଟ ଦିଅନ୍ତୁ ନାହିଁ । ମୋର ବିନମ୍ର ନିବେଦନ, ଆପଣମାନେ କୌଣସି ପ୍ରକାରେ ପ୍ରଲୋଭିତ ନ ହୋଇ ମୋତେ ଭୋଟ ଦିଅନ୍ତୁ ।

ସୁଲେମାନ - ଭାଇମାନେ, ସମୟ ଆସିଛି । ଆପଣମାନେ ବିଚାର କରନ୍ତୁ । ବାହାର ଚାକଚକ୍ୟ, ଲମ୍ବା ଭାଷଣବାଜିରେ ଆପଣ ଭୁଲିଯାଆନ୍ତୁ ନାହିଁ । ନିଜ ପାଇଁ ସେବକ ବାଛନ୍ତୁ, ଯିଏ ଆପଣଙ୍କର ନିତିଦିନିଆ ସାଥୀ ହୋଇ ରହିପାରିବ । ହେଲେ ମହାସେବକ ବାଛନ୍ତୁ ନାହିଁ । କାରଣ ମହାସେବକର ସ୍ଥାନ ଈଶ୍ୱର ନିବାସରେ । ଦୁଃସ୍ଥ ଜନତାର ସେବକ କେବେ ମହାସେବକ ହୋଇ ନ ପାରେ ! (କରତାଳି ଭିତରେ ଗୋଟାଏ ଢେ଼ଲା ଆସି ବାଜିଛି ସୁଲେମାନଙ୍କ ଉପରେ । ରକ୍ତ ବହିଛି । ଭୀଷଣ କୋଳାହଳ ଆରମ୍ଭ ହୋଇଛି ।)

ଯୋଶେଫ୍ - (ମଞ୍ଚ ଉପରକୁ ଆସି) ଏଇଟା ଦବି ଯିବାର ସମୟ ନୁହେଁ, ସୁଲେମାନ । ଭାଇମାନେ... ଆପଣ ବିଚାର କରନ୍ତୁ । ହିନ୍ଦୁ-ଧର୍ମର କେତେଜଣ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଲୋକେ ସୁଲେମାନଙ୍କୁ

ଜୀବନରେ ମାରିଦେବାକୁ ଧମକ ଦେଇଛନ୍ତି । ଆଉ ଆଜି ତ ଆପଣମାନେ ସ୍ୱଚକ୍ଷୁରେ ଦେଖୁଛନ୍ତି ସୁଲେମାନଙ୍କ ଅବସ୍ଥା । ଧର୍ମର ଭେକ ନେଇ କେହି କେବେ ଜନ ପ୍ରତିନିଧି ହୋଇପାରେନା । (ଉହୁଁକି ଆସିଛନ୍ତି ମହାସେବକ, ଯୋଶେଫଙ୍କ ପାଖକୁ । ଠେଲା ପେଲା ଭିତରେ ମହାସେବକ ତଳେ ପଡ଼ିଯାଇଛନ୍ତି । ମଞ୍ଚ ଉପରକୁ ଆସିଛନ୍ତି ପ୍ରଶାସକ ଏବଂ ତତ୍କ୍ଷଣାତ୍ ସେ ସୁଲେମାନଙ୍କୁ ଧକ୍କା ଦେବା ଆରମ୍ଭ କରିଦେଇଛନ୍ତି । ଏଇ ସଙ୍ଘର୍ଷ ଭିତରେ ଗୋଟାଏ ପଟେ ରହିଯାଇଛନ୍ତି ସୁଲେମାନ ଏବଂ ଯୋଶେଫ୍ । ଅନ୍ୟପଟେ ରହିଯାଇଛନ୍ତି ପ୍ରଶାସକ ଏବଂ ମହାସେବକ । ସଙ୍ଘର୍ଷ ମଝିରେ ଆସିଛନ୍ତି ଈଶ୍ୱର ।)

ଈଶ୍ୱର - 'ନା'... ! ଭାଇ ଭାଇ ଭିତରେ ଏଭଳି ଝଗଡ଼ା କରିବା ଠିକ୍ ନୁହେଁ । (ଉଭୟ ଗୋଷ୍ଠୀର ଲୋକେ ଈଶ୍ୱରଙ୍କୁ କିଛି ସମୟ ପାଇଁ ନିରୀକ୍ଷଣ କରିଛନ୍ତି ।)

ସୁଲେମାନ - 'ତମେ' ?

ଈଶ୍ୱର - ମୋତେ ବି ଭୁଲିଗଲ ? ମୁଁ ଈଶ୍ୱର... ।

ସୁଲେମାନ - କ'ଣ ପାଇଁ ଆସିଛ ?

ମହାସେବକ - ତମେ ଏଠାକୁ ଆସି ଠିକ୍ କରିନା ଈଶ୍ୱର !

ଯୋଶେଫ୍ - କ'ଣ ଦେଖିବାକୁ ଆସିଛ, ଈଶ୍ୱର ?

ସୁଲେମାନ - ତମରି ପାଇଁ ଆଜି ରକ୍ତପାତ । ହଁ, ଠିକ୍ ଅଛି । ତମେ ହିଁ ଆଜି ନିର୍ଣ୍ଣୟ ନେଇଯାଅ । କିଏ ବଞ୍ଚିବ ଏଠି ?

ଈଶ୍ୱର - ତମେମାନେ ଭୁଲ କରୁଛ ! ମୋ'ରି ପାଇଁ, ମୋ'ରି ନାମରେ ଏ ଅଯଥା ସଙ୍ଘର୍ଷ... ରକ୍ତପାତ କାହିଁକି ?

ସୁଲେମାନ - ତମେ ସୁବିଧାବାଦୀ ।

ମହାସେବକ - ତମକୁ ଆଜି ଜନତା ଦରବାରରେ କହିବାକୁ ହେବ । କୁହ ତମେ କାହାର ? ହିନ୍ଦୁର ନା ମୁସଲମାନର ? ଖ୍ରୀଷ୍ଟିଆନର ନା ଶିଖ୍‌ର ?

ଯୋଶେଫ୍ - ଉତ୍ତର ଦିଅ ଈଶ୍ୱର, ତମକୁ ଉତ୍ତର ଦେବାକୁ ହବ ।

ଈଶ୍ୱର - ମୁଁ ତ ସମସ୍ତଙ୍କର । ସାରା ବିଶ୍ୱର... ସମଗ୍ର ମାନବ ସମାଜର ।

ମହାସେବକ - ନା' ତାହା କେବେ ହୋଇପାରେନା, ଯୁଗେ ଯୁଗେ ଈଶ୍ୱର ହିନ୍ଦୁର ଥିଲା, ହିନ୍ଦୁର ଅଛି ଏବଂ ହିନ୍ଦୁର ରହିବ । ତମରି ପାଇଁ ମୁଁ ସୃଷ୍ଟି କରିଛି ଅଜସ୍ର ପର୍ବପର୍ବାଣି... ଯାନିଯାତ୍ରା... ମହୋତ୍ସବ... ।

ସୁଲେମାନ - ତମରି ଖୁସି ପାଇଁ ମୁଁ ପାଳନ କରିଛି ଇଦ୍, ରମଜାନ୍... ।

ଯୋଶେଫ୍- ତମରି ପାଇଁ ଆମେ ପାଳୁଛୁ ଖ୍ରୀଷ୍ଟମାସ... ଗୁଡ୍ ଫ୍ରାଇଡେ...

ଈଶ୍ୱର - ହେଲେ ଏସବୁ ତ ମୁଁ ଚାହିଁ ନ ଥିଲି ?

ମହାସେବକ - ତମ ଚାହିଁବାର କୌଣସି ଆବଶ୍ୟକ ନ ଥିଲା ।

ଈଶ୍ୱର - 'ଅର୍ଥାତ୍' ?

ସୁଲେମାନ - ତମେ ଥିଲ ନିସ୍ତରଙ୍ଗ । ତମ ଭିତରେ ପ୍ରଥମେ ଜୀବନ ଭରି ଦେଇଥିଲି ମୁଁ ।

ମହାସେବକ - ବଞ୍ଚି ରହିବାର ଅଦମ୍ୟ ଆକାଙ୍‌କ୍ଷା ସହିତ ସେବା ପୂଜା ପାଇବାର ବାସନା ତମ ଭିତରେ ସୃଷ୍ଟି କରିଥିଲି ମୁଁ ।

ଯୋଶେଫ୍- ତମ ପାଇଁ ସୃଷ୍ଟି କରିଥିଲି ମୁଁ ନାନା ବ୍ୟଞ୍ଜନ ।

ସୁଲେମାନ - ଆଜିପର୍ଯ୍ୟନ୍ତ ଯେତେ ଅଭିନୟ କରିଆସିଛି, ସେସବୁ କେବଳ ତମରି ପାଇଁ ।

ଈଶ୍ୱର - ଏସବୁ ତମେମାନେ କ'ଣ କହୁଛ ?

ମହାସେବକ - ମନେ ପକାଅ । ମୋ'ରି କାନ୍ଧରେ ହାତ ଦେଇ ତମେ ସେଦିନ ବିଶ୍ୱରେ ପରିଚିତ ହୋଇ ନ ଥିଲ ?

ସୁଲେମାନ - ତମକୁ ଖୁସି କରାଇବା ପାଇଁ ମୁଁ ରଚନା କରିଥିଲି କୋରାନ୍ ।

ଯୋଶେଫ୍ - ତମ ପାଇଁ ମୁଁ ରଚନା କରିଥିଲି ପ୍ରେୟାର...ବାଇବେଲ୍...

ଈଶ୍ୱର - ମତେ ତମେମାନେ ଭୁଲ ବୁଝୁଛ ! ଅନ୍ତତଃ ଥରେ ମୋତେ ଚିହ୍ନିବାକୁ ଚେଷ୍ଟା କର ।

ମହାସେବକ - ସତ୍ୟ ପ୍ରକାଶରେ ଏତେ କୁଣ୍ଠାବୋଧ କାହିଁକି ? ମୁଁ ତ ସେଦିନ ତମପାଇଁ କାର୍ପଣ୍ୟ ପ୍ରକାଶ କରି ନ ଥିଲି ? କୁହ ନିଃସଂକୋଚରେ ପ୍ରକାଶ କର । ତମେ ପୂର୍ଣ୍ଣଭାବେ ହିନ୍ଦୁର । ହିନ୍ଦୁଧର୍ମର...

ସୁଲେମାନ - ନା' ତା' କେବେ ହୋଇପାରେନା । ତମେ ଇସଲାମ୍ ଧର୍ମର । ତମ ପାଇଁ ମୁଁ ସବୁକିଛି ତ୍ୟାଗ କରିଛି । ହେଲେ ବର୍ତ୍ତମାନ ତମେ ମତେ କେବେ ଧୋକ୍କା ଦେଇପାରିବନି । ତମେ ମୁସଲମାନର... ।

ଯୋଶେଫ୍ - ତମେ ଖ୍ରୀଷ୍ଟଧର୍ମର... ତମେ ଖ୍ରୀଷ୍ଟିଆନମାନଙ୍କର...

ମହାସେବକ - 'ହିନ୍ଦୁର'... ।

ସୁଲେମାନ - 'ମୁସଲମାନର'... ।

ଯୋଶେଫ୍ - ଖ୍ରୀଷ୍ଟିଆନ୍‌ର... ।

ମହାସେବକ - ହିନ୍ଦୁର... ।

ସୁଲେମାନ - ମୁସଲମାନର... ।

ଯୋଶେଫ୍ - ଖ୍ରୀଷ୍ଟିଆନ୍‌ର ... ।

*ଘୋଷଣା - ଅଯୋଧ୍ୟାଠାରେ ଆଜି ରାମମନ୍ଦିର ଶିଳାନ୍ୟାସ କାର୍ଯ୍ୟକ୍ରମ ଥିବାରୁ ଦେଶବାସୀ ଜାଗତିଆର ରହିବାକୁ ସରକାର ଘୋଷଣା କରିଛନ୍ତି । ବିହାରର ବାରଟି ଜିଲ୍ଲାରେ ରାମଶିଳା ପୂଜନ ଘଟଣାକୁ କେନ୍ଦ୍ରକରି ଉତ୍ତେଜନା ଲାଗି ରହିଥିବାରୁ ରାଜ୍ୟ ସରକାରଙ୍କ ପକ୍ଷରୁ ନିରାପତ୍ତା ବ୍ୟବସ୍ଥାକୁ କଡ଼ାକଡ଼ି କରାଯାଇଛି । ଆଜି ରାଜ୍ୟର ସମସ୍ତ ସ୍କୁଲ କଲେଜ ବନ୍ଦ ରହିଛି । ପୋଲିସ ସୂତ୍ରରୁ ପ୍ରକାଶ, ଗତକାଲି ରୋତାସ ଥାନା ଅଞ୍ଚଳରୁ ତିନୋଟି ମୃତଦେହ ଉଦ୍ଧାର କରାଯାଇଛି । ହିଂସାକାଣ୍ଡ ଘଟାଇବା ଅଭିଯୋଗରେ ସତାବନ ଜଣଙ୍କୁ ଗିରଫ କରାଯାଇଛି । ଏ ପର୍ଯ୍ୟନ୍ତ ରାଜ୍ୟରେ ଦଙ୍ଗା ଜନିତ ମୃତ୍ୟୁସଂଖ୍ୟା ଆଠ ବୋଲି ବେସରକାରୀ ସୂତ୍ରରୁ ଜଣାପଡ଼ିଛି । (ଘୋଷଣା ପରେ ସବୁ ଗୋଷ୍ଠୀର ଲୋକେ ଈଶ୍ୱରଙ୍କୁ ଘେରିଯାଇ ତାଙ୍କୁ ପ୍ରହାର କରିଛନ୍ତି ଏବଂ ନିଜ ନିଜ ମଧ୍ୟରେ ସଙ୍ଘର୍ଷ ଆରମ୍ଭ କରିଛନ୍ତି । ସଙ୍ଘର୍ଷର ଗୁଳିଗୋଳା ଗର୍ଜନର ଭିତରେ ଈଶ୍ୱର ତଳେ ପଡ଼ିଯାଇଛନ୍ତି ।*

# ତ୍ରୟୋଦଶ ଦୃଶ୍ୟ

*(ଧ୍ୱଂସର ବିଳାପ । ଝାପ୍‌ସା ଅନ୍ଧାର ଭିତରୁ ଈଶ୍ୱରଙ୍କ କରୁଣ କଣ୍ଠସ୍ୱର ବିଳପି ଉଠୁଥିଲା । ହିନ୍ଦୁ ଏବଂ ମୁସଲମାନ ଉଭୟ ସମ୍ପ୍ରଦାୟର କ୍ରୋଧ / ସଂଘର୍ଷରେ ସେ ଥିଲେ କ୍ଷତାକ୍ତ । ବାରମ୍ବାର ଉଠିବାକୁ ଚେଷ୍ଟାକରି ବିଫଳ ହେଉଥିଲେ । ଯନ୍ତ୍ରଣାରେ ଡହଳ ବିକଳ ହେଉଥିବା ବେଳେ ସାହାଯ୍ୟ କରିବାକୁ ଆଗେଇ ଆସିଛନ୍ତି ସମୟ ।)*

ସମୟ - (ସ୍ମିତ ହାସ୍ୟ ସହ) - ଖୁବ୍ କଷ୍ଟ ହେଉଛି ନା ?

ଈଶ୍ୱର - (ମଥାଟେକି) କିଏ ?

ସମୟ - ମତେ ଚିହ୍ନି ପାରୁନା ?

ଈଶ୍ୱର - ଓ, ସମୟ । ହେଲେ ତମେ ଏଠାରେ କାହିଁକି ?

ସମୟ - ପୁଣି ସେଇ ପୁରୁଣା ପ୍ରଶ୍ନ ? ମୁଁ ନ ଆସିଲେ ସ୍ୱର୍ଗ-ମର୍ତ୍ତ୍ୟ ପାତାଳରେ ଆଉ କେହି ନାହାନ୍ତି ତୁମ ପାଖକୁ ଆସିବାକୁ ।

ଈଶ୍ୱର - ଓଃ...(ଆହତ ହୋଇ)

ସମୟ - ଖୁବ କଷ୍ଟ ହେଉଛି ନା ?

ଈଶ୍ୱର - ସମୟ । ଉପହାସ ପାଇଁ ଆଉ କେହି ମିଳିଲେ ନାହିଁ ?

ସମୟ -	ସେମାନେ ବି ଏଇଠି ଉପହାସିତ ହୋଇଥିଲେ କେବଳ ତମରି ପାଇଁ । କେବଳ ତମରି ପାଇଁ ଏଇ ପବିତ୍ର ଅଯୋଧ୍ୟା ଭୂଇଁରେ ଅଳ୍ପ ସମୟ ପୂର୍ବରୁ ଯେଉଁ ରକ୍ତାକ୍ତ ସଂଘର୍ଷ ଘଟିଗଲା, ସେଥିପାଇଁ ଦାୟୀ କିଏ ? ଜବାବ ଦିଅ ଈଶ୍ୱର । ସେଥିପାଇଁ ଦାୟୀ ତମେ ନୁହଁ ?

*ଘୋଷଣା - ୧୯୮୯ରେ ବିହାରର ଭାଗଲପୁର ଜିଲ୍ଲାରେ ହିନ୍ଦୁ ମୁସଲମାନ ସାମ୍ପ୍ରଦାୟିକ ଦଙ୍ଗା ଘଟି ହଜାର ନିରୀହ ଲୋକ ମରିଛନ୍ତି ଓ ପଚାଶ ହଜାର ବାସହରା ହୋଇଛନ୍ତି । ୨୦୦୨ ଫେବୃଆରୀ ୨୭ ତାରିଖରେ ସାବରମତୀ ଏକ୍ସପ୍ରେସ୍‌ରେ ଅଗ୍ନିକାଣ୍ଡ ଘଟି ବିଶ୍ୱ ହିନ୍ଦୁ ପରିଷଦର ୫୮ କର ସେବକ ମୃତ୍ୟୁବରଣ କରିବା ପରେ ସମଗ୍ର ଗୁଜୁରାଟର ମୁସଲିମ୍ ବିରୋଧୀ ଦଙ୍ଗା, ଲୁଟ୍‌ପାଟ, ଧର୍ଷଣ ଓ ରାହାଜାନି ୩ ଦିନ ଧରି ବ୍ୟାପି ଯାଇଛି ।*

ଈଶ୍ୱର -	ହେଲେ ମୁଁ କ'ଣ ଚାହିଁଥିଲି ସଂଘର୍ଷ ?

ସମୟ -	ତେବେ କ'ଣ ପାଇଁ ଏ କୁରୁକ୍ଷେତ୍ର ? ତମେ ଯଦି ସର୍ବଧର୍ମ ସମନ୍ୱୟର ଦେବତା, ଭାଙ୍ଗିଦିଅ ରାମମନ୍ଦିର... ଧୂଳିସାତ୍ କରିଦିଅ ବାବ୍ରୀ ମସ୍‌ଜିଦ୍ । ଚିହ୍ନହୀନ, ବର୍ଣ୍ଣହୀନ ହେଉ ତମର ଏକାନ୍ତ ପରିଚୟ ।

ଈଶ୍ୱର -	ମୁଁ ତ ସେଇଆ ଚାହିଁଥିଲି । ହେଲେ ସେମାନଙ୍କର ଯେ ସାମ୍ପ୍ରଦାୟିକ ସଂଘର୍ଷ ମୋର ସବୁ ମନୋବଳ ଭାଙ୍ଗିଦେଇଛି । ମୁଁ କ୍ଳାନ୍ତ ... ଅବସନ୍ନ... ।

ସମୟ -	ମୁଁ ଜାଣିଥିଲି ତମ ଦୁର୍ଦ୍ଦିନରେ କେହି ହେଲେ ଜଣେ ପାଖକୁ ଆସିବେ ନାହିଁ । ଆସିବ କେବଳ ଜଣେ । ସେ ହେଉଛି ସମୟ । ଏଥର ଉଠ... ମୋ କାନ୍ଧରେ ଭରାଦେଇ ଉଠ । (ଈଶ୍ୱର ସମୟର ହାତ ଧରି ଠିଆ ହୋଇଛନ୍ତି ।)

ଈଶ୍ୱର -	ସେମାନେ ଧର୍ମ ନାମରେ ଶେଷରେ ମୋତେ ନିଲାମ କରିବାକୁ ପଛେଇଲେ ନାହିଁ । ଗୀତା, ବାଇବେଲ୍, କୋରାନ୍, ଗ୍ରନ୍ଥସାହିବ୍‌ର ସବୁ ବାଣୀ ବୃଥା ହେଲା ।

ସମୟ -	ପରାଜୟର ଦାମୀ ଉପଢୌକନ ଗୁଡ଼ାକ ଖୁବ୍ ଭାରି ଜଣାପଡୁଛି ନା' ଈଶ୍ୱର ? ଯାହା ହେଲେବି ସେସବୁ କେବଳ ତମରି ପ୍ରାପ୍ୟ । (ସ୍ମିତହାସ୍ୟ)

ଈଶ୍ୱର - ସମୟ, ଏଇଟା ପରିହାସର ବେଳ ନୁହେଁ ।

ସମୟ - ଅନୁତାପର ବି ନୁହେଁ । ସାରା ବିଶ୍ୱ ଆଜି ତମ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାକୁ ଯାଉଛି । ସେମାନଙ୍କ ଯୁକ୍ତି, ପୃଥିବୀରୁ ତମର ଆବଶ୍ୟକତା ଶେଷ ହୋଇଛି । ଏଣିକି ସମାଜ ବିନା ଈଶ୍ୱରରେ ପରିଚାଳିତ ହେବ ।

ଈଶ୍ୱର - ନା' ସମୟ ନା' । ମୋ ଉପରୁ ସେମାନଙ୍କର ବିଶ୍ୱାସ ତୁଟିଗଲେ ଏ ପୃଥିବୀ ଧ୍ୱଂସ ପାଇଯିବ । ସମାଜ ରସାତଳକୁ ଚାଲିଯିବ ।

*ଘୋଷଣା - ୧୯୮୪ ଅକ୍ଟୋବର ୩୧ ତାରିଖରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ହତ୍ୟାପରେ ଦିଲ୍ଲୀରେ ତିନିହଜାର ଓ ସମଗ୍ର ଭାରତରେ ଆଠହଜାର ନିରୀହ ଶିଖ୍ ପ୍ରାଣ ହରାଇଛନ୍ତି ଶିଖ୍ ବିରୋଧୀ ଦଙ୍ଗାରେ ।*

ସମୟ - ସମାଜ ରସାତଳକୁ ଯାଇପାରେ । ପୃଥିବୀ ଧ୍ୱଂସ ହୋଇପାରେ । ତଥାପି ସେମାନେ ତମ ଉପରେ ଆଉ ବେଶି ଦିନ ନିର୍ଭର କରିପାରିବେ ନାହିଁ ।

ଈଶ୍ୱର - କିନ୍ତୁ କାହିଁକି ?

ସମୟ - ସେ ପ୍ରଶ୍ନ ଅନ୍ତତଃ ନିଜକୁ ପଚାର । ତମକୁ ବିଶ୍ୱାସ କରି ମଣିଷ ପାଇଛି କ'ଣ ?

ଈଶ୍ୱର - ମୋତେ ବିଶ୍ୱାସ କର ସମୟ । ସାରାଜୀବନ ମୁଁ କେବଳ ସେମାନଙ୍କର ଶୁଭମନାସି ଆସିଛି ।

ସମୟ - ନା', ତମେ ସେମାନଙ୍କୁ ପ୍ରତାରିତ କରିଛ । ଧର୍ମର ମଦ ପିଆଇ ମଣିଷ ଜାତିକୁ ନପୁଂସକ କରିଛ ତମେ । ଭକ୍ତିର ଭାକ୍ତିକ ପ୍ରବଚନ ଶୁଣାଇ ସେମାନଙ୍କୁ ଦୁର୍ବଳ କରିଛ ତମେ ।

ଈଶ୍ୱର - ନା' ସମୟ ନା' । ଗୋଟାଏ ଜଡ଼ବାଦୀ ଜଗତ ମଧ୍ୟରୁ ସେମାନଙ୍କୁ ଉଦ୍ଧାର କରି ମୁଁ କ'ଣ ଭୁଲ୍ କରିଛି ? ସେମାନଙ୍କ ପିଣ୍ଡରେ ସତ୍ୟ-ଶାନ୍ତି-ଅହିଂସାର ବାଣୀ ଭରିଦେଇ ମୁଁ କ'ଣ ଅନ୍ୟାୟ କରିଛି ? କୁହ ସମୟ...

ସମୟ - ସବୁ ଗୁଡାଏ ପ୍ରେମପୂର୍ଣ୍ଣ ପ୍ରତାରଣା । (ଉଭୟ ଫ୍ରିଜ୍ ହୋଇଯାଇଛନ୍ତି । ଏହି ସମୟ ମଧ୍ୟରେ ଅନ୍ତରାଳରୁ ଭାସିଆସିଛି ଏକ ଘୋଷଣା । ଘୋଷଣା ପରେ ପରେ ପୁଣି ଫ୍ରିଜ୍ ଅବସ୍ଥା କଟିଯିବ ।)

*ଘୋଷଣା -* *ମଧ୍ୟପ୍ରଦେଶର ବିଳାସପୁର ଜିଲ୍ଲାର ପଣ୍ଡାତରାଇ ଗ୍ରାମରେ ଏକ ମନ୍ଦିର ମଧ୍ୟରେ ହରିଜନମାନଙ୍କର ବଳପୂର୍ବକ ପ୍ରବେଶ ଉଦ୍ୟମ ଯୋଗୁ ସବର୍ଣ୍ଣ ହରିଜନଙ୍କ ମଧ୍ୟରେ ଭୟଙ୍କର ଗଣ୍ଡଗୋଳ ସୃଷ୍ଟି ହୋଇଛି । ଏହି ଦଙ୍ଗାରେ ପୋଲିସ୍ ଗୁଳିରେ ଚାରିଜଣ ନିହତ ଏବଂ ଦଶଜଣ ଆହତ ହୋଇଛନ୍ତି । ଘଟଣାର ବିଚାର ବିଭାଗୀୟ ତନ୍ତ ପାଇଁ ରାଜ୍ୟ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି ।*

ସମୟ - ତମେ ତ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ପାଇଁ ସମାନ । ତେବେ କ'ଣ ପାଇଁ ଯେ ବିରୋଧାଭାସ ? କ'ଣ ପାଇଁ ଜାତି ଜାତି ମଧ୍ୟରେ ସଂଘର୍ଷ ? କ'ଣ ପାଇଁ ଧର୍ମ ଧର୍ମ ମଧ୍ୟରେ ବିଦ୍ୱେଷ ? ଜବାବ୍ ଦିଅ ।

ଈଶ୍ୱର - ହେଲେ ଏସବୁ ମୁଁ ଚାହିଁ ନଥିଲି ?

ସମୟ - ତମେ ସୁବିଧାବାଦୀ...ସ୍ୱାର୍ଥପର ...

ଈଶ୍ୱର - ନା'... ସମୟ... ନା'... ।

ସମୟ - ସବୁଯୁଗରେ ସଂକୀର୍ଣ୍ଣ ଜାତିପ୍ରଥାକୁ ତମେ ପ୍ରୋତ୍ସାହନ ଯୋଗାଇ ଆସିଛ । ତମରି ପାଇଁ ସେଦିନ କଳାପାହାଡ଼ ସୃଷ୍ଟି କରିଥିଲା ଶ୍ରୀମନ୍ଦିରରେ ଧ୍ୱଂସର ଲୀଳା । ତମରି ପାଇଁ ବାବରୀ ମସ୍‌ଜିଦ୍‌ରେ ହିନ୍ଦୁମାନଙ୍କର ଦୌରାତ୍ମ୍ୟ ବୃଦ୍ଧି ପାଇଥିଲା । ତମରି ପାଇଁ ଦିଲ୍ଲୀର ଗୁରୁଦ୍ୱାର ଭିତରୁ ଛୁଟିଥିଲା ରକ୍ତର ଧାର । କୁହ, ଆଉ କେତେଟା ଅଘଟଣ ପର୍ଯ୍ୟନ୍ତ ତମେ ନିସ୍ତରଙ୍ଗ ହୋଇ ରହିଥିବ ?

ଈଶ୍ୱର - ମୋତେ ଟିକେ ବୁଝିବାକୁ ଚେଷ୍ଟାକର ସମୟ । ଏ ସବୁରେ ମୋର କୌଣସି ଭୂମିକା ନାହିଁ । ମୋ ସୃଷ୍ଟିରେ କେବଳ ଗୋଟାଏ ଧର୍ମ ରହିଛି ସେଇଟି ହେଉଛି ମାନବ ଧର୍ମ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟ, ଶିଖ୍, ଜୈନ୍, ବୌଦ୍ଧ ଏସବୁ ସେହି ଗୋଟିଏ ରୂପର କେବଳ ରୂପାନ୍ତର ମାତ୍ର ।

ସମୟ - ତେବେ କ'ଣ ପାଇଁ ପଞ୍ଜାବର ଜଗନ୍ନାଥ ମନ୍ଦିରରେ କଟା ଗୋରୁ ମୁଣ୍ଡ 'ଫିଙ୍ଗା ଯାଇଥିଲା ? ମନ୍ଦିର ଗୁରୁଦ୍ୱାର ଯଦି ଉପାସନାର କ୍ଷେତ୍ର, କ'ଣ ପାଇଁ ତା'ହେଲେ ହିନ୍ଦୁ-ଶିଖ୍-ସଂଘର୍ଷ ? ସେଦିନ କେଉଁଠି ଆତ୍ମଗୋପନ କରିଥିଲା ତମର ଐଶ୍ୱରିକ ସତ୍ତା ?

ଈଶ୍ୱର - ସ୍ୱାର୍ଥରେ ଅନ୍ଧ ମଣିଷ ମତେ ଖୋଜୁଥିଲା ମନ୍ଦିର ଆଉ ମସ୍‌ଜିଦ୍ ଭିତରେ । ହେଲେ ମୋର ସ୍ଥାନ ଉପାସନା ମନ୍ଦିର ନୁହେଁ, ବ୍ୟକ୍ତିର ହୃଦୟ କନ୍ଦର । ନିହିତ ସ୍ୱାର୍ଥ ଯୋଗୁ ମଣିଷକୁ ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ଗୁରୁଦ୍ୱାର ସବୁ ଅଲଗା ଅଲଗା ଦେଖାଯାଉଥିଲା ।

ସମୟ - ତମେ ତ ସୃଷ୍ଟି... ତମେ ତ ସ୍ଥିତି... ଆଉ ତମେଇ ତ ବିକାଶର ଚରମ ପ୍ରକାଶ । ସବୁ ଦେଖି, ସବୁ ଜାଣି ତଥାପି ଅଥର୍ବ କାହିଁକି ? ନା' ତମେ କେବଳ ଜଣେ ପ୍ରଚାରକ ?

ଈଶ୍ୱର - ନା' ସମୟ, ଯୁଗଯୁଗ ଧରି ମଣିଷ ମୋତେ ବୁଝିବାରେ ଅବହେଳା ପ୍ରଦର୍ଶନ କରି ଆସିଛି । ମୋର ବିଚାରକୁ ସେମାନେ ଗ୍ରହଣ କରିନାହାନ୍ତି । ସେମାନଙ୍କ ପାଇଁ ମୁଁ ହୋଇପଡିଛି ପ୍ରଚାରର ଶସ୍ତା ମାଧ୍ୟମ । କିନ୍ତୁ ଏସବୁ କ'ଣ ମୁଁ ଚାହିଁଥିଲି ?

ସମୟ - ଈଶ୍ୱର, ତମର ଚାହିଁବା ଆଉ ପାଇବା ଭିତରେ ଅନେକ ତଫାତ୍ । ଆଉ ସେ ଫରକ ପାଇଁ ଦାୟୀ ତମେ । ଧର୍ମ ଧର୍ମ ନାମରେ ଆଜି ଯେତେ ବ୍ୟଭିଚାର ବଢିଚାଲିଛି, ସେଥିପାଇଁ କ'ଣ ତମେ ଦାୟୀ ନୁହେଁ ? କ'ଣ ପାଇଁ ଆଜି ଅଯୋଧ୍ୟା ଜଳୁଛି ? କ'ଣ ପାଇଁ ଆଜି ପଞ୍ଜାବ ରକ୍ତମୁଖା ? କ'ଣ ପାଇଁ ଚିରହରିତ୍ ସ୍ୱପ୍ନର କାଶ୍ମୀର ଆଜି ଲହୁଲୁହାଣ ?

ଈଶ୍ୱର - ଏସବୁରେ ମୋର କିଛି ହାତ ନାହିଁ, ସମୟ । ମୁଁ ଏକ ମାତ୍ର ସେମାନଙ୍କ ପାଇଁ ମୁଁ ବହୁରୂପୀ । କୁହ ଏ ବିଚାର କ'ଣ ମୁଁ ମଣିଷ ଭିତରେ ଭରି ଦେଇଥିଲି ? ସୃଷ୍ଟିର ଆରମ୍ଭରେ ମୁଁ ଥିଲି । ଆଜି ବି ଅଛି । ସେଇ ଏକ ଅବିନଶ୍ୱର ଅନୁଭୂତିର ମୁଁ ହିଁ କେନ୍ଦ୍ରବିନ୍ଦୁ । କିନ୍ତୁ ଆଜିର ମଣିଷ ମୋତେ ଭୁଲିଯାଇଛି । ମୋର ଅର୍ଥହୀନ ରୂପ ହିଁ ସେମାନଙ୍କ ପାଇଁ ବଡ଼ ହୋଇଛି ।

ସମୟ - ତମ ବିଶ୍ୱାସର ବଳୟ ଦୁର୍ବଳ ହୋଇଯାଇଛି... ଈଶ୍ୱର ।

ଈଶ୍ୱର - ହେଲେ ମୁଁ ତ କେବେ ବିଶ୍ୱାସରେ ବିଷ ଭରିନି ।

ସମୟ - କ'ଣ ପାଇଁ ତା'ହେଲେ ବିଶ୍ୱାବସୁର ବିଶ୍ୱାସକୁ ହତ୍ୟା କରିଥିଲ ? ସେ ଥିଲା ଦଳିତ ଜାତିର ପ୍ରତିନିଧି, ଏଇଆ ନା' ? ଦେଇ ପାରିନଥିଲା ତମକୁ ସେ ତୁଳୀତଳ୍ପିତ ଶଯ୍ୟା ? ଭୁରି ଭୋଜନ ? କରିପାରିନଥିଲା ସେ ବାରମାସରେ ତେର ପ୍ରକାର ଯାତ୍ରା ?

ଈଶ୍ୱର - ମତେ ଭୁଲ୍ ବୁଝନା, ସମୟ ।

ସମୟ - ତମ ଉପରେ କେବେ ନିର୍ଭର କରାଯାଇପାରେନା । ତମେ ପୁଞ୍ଜିବାଦର ସମର୍ଥକ । ତମେ କେବେ ଖଟିଖିଆ ମଣିଷର ହୋଇପାରନା ।

ଈଶ୍ୱର - ମତେ ବିଶ୍ୱାସ କର ସମୟ । ମୁଁ ଦଳିତ ପତିତର ସଖା ସହୋଦର । ସମାଜରେ ସତ୍ୟ-ଶାନ୍ତି ପ୍ରତିଷ୍ଠା ପାଇଁ ମୁଁ ସବୁବେଳେ ସେମାନଙ୍କ ସାଥିରେ ରହିଆସିଛି ।

ସମୟ - ତମେ ଶାନ୍ତିର ପୂଜାରୀ । ହୁଁ ! ତେବେ କୁହ, କ'ଣ ପାଇଁ ସେଦିନ ମାର୍ଟିନ୍ ଲୁଥରଙ୍କୁ ଶହୀଦ୍ ହେବାକୁ ପଡ଼ିଥିଲା ? କ'ଣ ପାଇଁ ସକ୍ରେଟିସ୍ ବିଷପାନ କରିଥିଲେ ? କ'ଣ ପାଇଁ ସେଦିନ ମୋହନ ଦାସ କରମଚାନ୍ଦ ଗାନ୍ଧିଙ୍କୁ ପ୍ରାର୍ଥନା ସଭାରେ ଟଳିପଡ଼ିବାକୁ ହେଲା ?

ଈଶ୍ୱର - ମୁଁ ତମକୁ କେମିତି ବୁଝାଇବି ସମୟ । ଏ ପୃଥିବୀରେ ଯାହା କିଛି ଘଟିଯାଇଛି ବା ଘଟୁଛି, ସେସବୁ କେବଳ ମୋ ନାମରେ ଘଟୁଛି । ତା' ସହିତ ମୋର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ ।

ସମୟ - ବ୍ୟକ୍ତି ନିକଟରୁ ତମର ପ୍ରୟୋଜନ ଶେଷ ହୋଇଆସୁଛି, ଈଶ୍ୱର ।

ଈଶ୍ୱର - ତମେ ସେପରି କୁହନା, ସମୟ । ମୋର ଏଥିରେ ତିଳେମାତ୍ର ଦୋଷ ନାହିଁ । ନିଜର ସ୍ୱାର୍ଥ ପାଇଁ ସୁବିଧା ପାଇଁ ସେମାନେ ମୋ ନାମକୁ ବ୍ୟବହାର କରିଆସିଛନ୍ତି ।

ସମୟ - ଦୁଃଖ ଆସୁଛି, ଈଶ୍ୱର । ମଣିଷ ଆଜି ଆତ୍ମସଚେତନ ହେବାକୁ ଯାଉଛି । ଯେଉଁଦିନ ସେ ପୂର୍ଣ୍ଣ ସଚେତନ ହୋଇଯିବ, ସେଦିନ ଈଶ୍ୱର ନାମ ପୃଥିବୀରୁ ଲିଭିଯିବ । ତମେ ଆଉ ତାକୁ ତମ ଯାଦୁରେ ବଶ କରିପାରିବନି ।

ଈଶ୍ୱର - ନା'.... ସମୟ.... ନା'... । ବ୍ୟକ୍ତିର ବିଶ୍ୱାସକୁ ତମେ ଏମିତି ବିଭଗ୍ନ କରିଦିଅନି । ସେ ବଞ୍ଚିବ, ବିଶ୍ୱାସକୁ ନେଇ... ଭକ୍ତିକୁ ନେଇ... ସତ୍ୟକୁ ନେଇ... ଶାନ୍ତିକୁ ନେଇ.... । (ଈଶ୍ୱର ଦୁଃଖରେ ଭାଙ୍ଗି ପଡିଛନ୍ତି । ସମୟ ମୁଖମଣ୍ଡଳରେ ତୃପ୍ତିର ହସ । ଧୀରେ ଧୀରେ ଆଲୋକ ନିଷ୍ପ୍ରଭ ହୋଇଛି ।)

# ଶେଷ ଦୃଶ୍ୟ

*(ସମୟ ଦିବସ ବାଦ୍ୟ ବାଦନ କରି ମଞ୍ଚକୁ ଆସିଛନ୍ତି ଓସ୍ତାଦ । ଏଥରକ କିନ୍ତୁ ତାଙ୍କ ମୁହଁରେ ହସ ନ ଥିଲା । କୌଣସି କାରଣରୁ ତାଙ୍କ ମୁଖମଣ୍ଡଳରେ ଦୁଃଖର ସ୍ପଷ୍ଟ ଛାପ ଦେଖାଯାଉଥିଲା । ବାଦ୍ୟ ବାଦନ ପରେ ପରେ ସେ ମଞ୍ଚର ସମ୍ମୁଖ ଭାଗକୁ ଆସିଯାଇଛନ୍ତି ।)*

ଓସ୍ତାଦ – ମା', ମାଉସୀ, ବାବୁଭାୟାମାନେ ! ଆପଣମାନେ ଭାବନ୍ତୁନି ଯେ ମୋ ଖେଳ ସରିଗଲା ବୋଲି ? ଏ ଯେଉଁ ଖେଳ ଆରମ୍ଭ ହୋଇଛି, ତା'ର ଆରମ୍ଭଟା ସମସ୍ତେ ଦେଖିଛନ୍ତି । ହେଲେ ଶେଷଟା କେବେ ହେବ, କେହି କହିପାରିବେନି ।

ଆପଣମାନେ ଭାବୁଥିବେ, ମୁଁ ଈଶ୍ୱରକୁ କୋଉଠି ଲୁଚେଇ ରଖିଛି । ହେଲେ ଅସଲ କଥାଟା ସେଇଆ ନୁହେଁ । ଯାଗାକୁ ଯାଗା ବୁଲି ଖେଳ ଦେଖାଇବା ପାଇଁ ତ ଆମର କାମ । କ'ଣ କରିବୁ । ପେଟ ପାଇଁ ନାଟ । ମୁଁ ମନା କରୁଛି । ଜବରଦସ୍ତି କହିଲା, ନାଇଁ ଅଯୋଧ୍ୟା ଯିବା । ହେଲେ... ? ସିଏ ଯାଗାଟା ଆଦୌ ଭଲ ନୁହେଁ । ଦି' ଦଳ ଲୋକେ ମାଡ଼ଗୋଳ ହୋଇ ତା' ମୁଣ୍ଡ ଫଟେଇ ଦେଇଛନ୍ତି । ମୁଁ କେତେଥର କହିଛି... ଥାଉରେ ବାବା । ଭଲଲୋକି ହୋଇ ଆମକୁ କ'ଣ ମିଳିବ ? କଥା ମାନିଲା ନାହିଁ । ବହେ ଛେଚିଛନ୍ତି ଲହୁଲୁହାଣ ହୋଇ ଘରକୁ ଫେରିଛି, ତା' ଦେହଟା ଭଲ ହେଇଯାଉ... । କଥା ଦଉଛି... ପୁଣି ଖେଳ ଦେଖେଇବୁ ।

(ଧୀରେ ଧୀରେ ମଞ୍ଚ ଅନ୍ଧକାର ହୋଇ ଆସିଛି) ।



ନାଟ୍ୟକାର ନାରାୟଣ ସାହୁଙ୍କ ଜନ୍ମ ୧୯୫୫ ମସିହା କେନ୍ଦ୍ରାପଡ଼ା ଜିଲ୍ଲାର (ବଗଡ଼ା) ଅରଡ଼ାସାହି ଗ୍ରାମରେ । ନାଟ୍ୟକାର, ଚିତ୍ର ନାଟ୍ୟକାର ଏବଂ ନାଟ୍ୟ ସମାଲୋଚକ ଭାବେ ସେ ବେଶ୍ ଜଣାଶୁଣା । ତାଙ୍କର 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର' ନାଟକ ୧୯୯୧ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛି । ରେଡ଼ିଓ, ଟେଲିଭିଜନ ଏବଂ ମଞ୍ଚ ଏହି ତିନୋଟି ମେଡ଼ିଆରେ ତାଙ୍କର ପଦଚିହ୍ନ ସ୍ପଷ୍ଟ । ଶ୍ରୀ ସାହୁଙ୍କର କେତୋଟି ଚର୍ଚ୍ଚିତ ନାଟକ ହେଉଛି– କାହାଣୀ ସବାଶେଷ ଲୋକର, ପୁନଶ୍ଚ ସଂଗ୍ରାମ, ମୂକ, ଉପାସନା, ଅଧାଦେଖା ସ୍ୱପ୍ନ, କ୍ରାନ୍ତି, ନିଷିଦ୍ଧ ସଂଳାପ, ପ୍ରାୟଶ୍ଚିତ୍ତ, ଦୂର ଆକାଶର ତାରା, ଅପରାହ୍ଣର ଅବଶୋଷ ଇତ୍ୟାଦି । ସଂପ୍ରତି ଡକ୍ଟର ସାହୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଏମେରିଟସ୍ ପ୍ରଫେସରଭାବେ ଅବସ୍ଥାପିତ ।

ପ୍ରକାଶକ



ସତ୍ୟନାରାୟଣ ବୁକ୍ ଷ୍ଟୋର

